ବଣଜଙ୍ଗଲର ଜୀବଜନ୍ତୁ — ତିନି

# ଭାଲୁ

ଶ୍ରୀ ଉଦୟନାଥ ଷଡ଼ଙ୍ଗୀ



ଆର୍ଯ୍ୟ ଷ୍ଟୁଡେଣ୍ଟସ୍ ଷ୍ଟୋର

Digitized by srujanika@gmail.com

ପ୍ରକାଶକ
ଶ୍ରୀ ଅନନ୍ତ ମିଶ୍ର, ପ୍ରୋପ୍ରାଇଟର
କଟକ ଷ୍ଟୁଡେଣ୍ଟ୍‌ସ ଷ୍ଟୋର
ବାଲୁବଜାର, କଟକ—୨

ଚତୁର୍ଥ ପ୍ରକାଶ
୧୯୭୫

ମୁଦ୍ରାକର
ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର
ପ୍ରସାଦ ପ୍ରେସ,
କଟକ—୨

ମୂଲ୍ୟ— ତୈଶ ପଇସା ମାତ୍ର

Digitized by srujanika@gmail.com




—୧

ଛୋଟ ଛୋଟ ପିଲଙ୍କୁ ଖେଳାଇଲା ବେଳେ ମାଆମାନେ ଗୀତ ବୋଲନ୍ତି—

"ଛାକ୍ ଧିନା ଧିନ ଧିନ,

ଭାଲୁ ନାଚେ ଥେଇକି ଥେଇ କେଳା ବଜାଏ ଗିନ ।"

ଏହି ଭାଲୁନାଚ ଅଳ୍ପ ବହୁତ ସବୁ ପିଲା ଦେଖିଥିବେ । କେଳାମାନେ ସମୟ ସମୟରେ ଗାଁ ଗାଁ ବୁଲି ଭାଲୁ ନାଚନ୍ତି । ସେ ଭାଲୁଙ୍କୁ ସେମାନେ ବଣରୁ ଧରିଆଣି ପୋଷିଥାଅନ୍ତି । ସେମାନଙ୍କ ନାକ ଫୋଡ଼ି ସେଥିରେ ଦଉଡ଼ି ବାନ୍ଧନ୍ତି । ତା ହେଲେ ଭାଲୁ ଆଉ କୁଆଡ଼େ ପଳାଇ ଯାଏ ନାହିଁ ।

Digitized by srujanika@gmail.com

ଭାଲୁ ବଣ ଜଙ୍ଗଲର ଜନ୍ତୁ । ପୃଥିବୀର ପ୍ରାୟ ସବୁ ଦେଶର ବଣ ଜଙ୍ଗଲରେ ସେମାନେ ରହିଅଛନ୍ତି । ଦେଶ ଭେଦରେ ସେମାନଙ୍କ ଆକାର ପ୍ରକାର ଭିନ୍ନ ରକମର ହୋଇଥାଏ ।

ଆମ ଦେଶ ଜଙ୍ଗଲରେ ଯେଉଁ ଭାଲୁ ଥାଆନ୍ତି, ସେଗୁଡ଼ିକ କଳା ରଙ୍ଗର । ରୁଷିଆ ଦେଶର ବରଫ ପଡ଼ୁଥିବା ଅଞ୍ଚଳରେ ବହୁତ ଭାଲୁ ଅଛନ୍ତି; ସେମାନଙ୍କ ଦେହର ବର୍ଣ୍ଣ ଧଳା । ସେମାନଙ୍କୁ 'ଧଳାଭାଲୁ' କୁହାଯାଏ । ସେଥିପାଇଁ କେହି କେହି ଅନ୍ଧାରେ ରୁଷିଆ ଦେଶକୁ 'ଧଳାଭାଲୁର ଦେଶ' ବୋଲି କହିଥାଆନ୍ତି । ଆମେରିକା ଦେଶର ଭାଲୁ ଆକାରରେ ସବୁ ଦେଶର ଭାଲୁଠାରୁ ବଡ଼ । ସେମାନଙ୍କର ଦେହର ରଙ୍ଗ କଫଗ୍ । ମେରୁପ୍ରଦେଶର ବରଫ ଭିତରେ ଏକପ୍ରକାର ଭାଲୁ ରହିଥାଆନ୍ତି । ଏମାନେ ଆକାରରେ ଛୋଟ ହେଲେ ମଧ୍ୟ ବଡ଼ ହିଂସ୍ରକ ।

ମାଈ ଭାଲୁ ଥରକେ ଗୋଟିଏ ବା ଦୁଇଟି ଛୁଆ ଜନ୍ମ କରେ । ଏହି ଛୁଆଗୁଡ଼ିକ ପ୍ରଥମରେ ଅତି ସାନ ହୋଇ ଥାଆନ୍ତି । ଏହାଙ୍କ ଦେହରେ ରୁମ ଆଦୌ ନ ଥାଏ, ଆଖି ମଧ୍ୟ ଫିଟି ନ ଥାଏ । ମା ଭାଲୁ ଏମାନଙ୍କୁ ଜଗି ସବୁବେଳେ ବସି ରହିଥାଏ ।

ଅଳ୍ପ ଦିନ ମଧ୍ୟରେ ଭାଲୁ ଛୁଆଗୁଡ଼ିକ ବଡ଼ ହୋଇ ଯାଆନ୍ତି । ସେମାନଙ୍କ ଆଖି ଫିଟେ, ଦେହରେ ରୁମ ଦେଖାଯାଏ । ସେମାନେ ଭୂଇଁରେ ଦଉଡ଼ ଧାପଡ଼ କରନ୍ତି । ମା ସେମାନଙ୍କୁ ସଙ୍ଗରେ ଧରି ବଣଭିତରେ ବୁଲେ । ଯେତେବେଳେ ଛୁଆମାନେ ବେଶ୍ ବଡ଼ ହୋଇଯାଆନ୍ତି, ମା ସେମାନଙ୍କଠାରୁ ଅଲଗା ହୋଇଯାଏ ।

Digitized by srujanika@gmail.com

ବଡ଼ ଭାଲୁ ଲମ୍ବାରେ ପାଞ୍ଚ ଛଅ ହାତ ଯାଏ ହୁଏ । ଆମେରିକାରେ ଆଠ ହାତ ଲମ୍ବାର ଭାଲୁ ଦେଖାଯାଇଛନ୍ତି ।

ଭାଲୁ ବାଘ ଓ ସିଂହଙ୍କ ଅପେକ୍ଷା ସାନ; ଭାଲୁର ବଳ ମଧ୍ୟ ସେମାନଙ୍କ ବଳଠାରୁ କମ୍ । କିନ୍ତୁ ଭାଲୁର ବିଶେଷତ୍ୱ, ସେ ପାଣିରେ ପହଁରିପାରେ, ଗଛରେ ଚଢ଼ିପାରେ, ଦୁଇ ଗୋଡ଼ରେ ଠିଆ ହୋଇ ବହୁଦୂରକୁ ଦୃଷ୍ଟିପାରେ । ଥଣ୍ଡା ସ୍ଥାନରେ ରହେ; ଗରମ ଜାଗାରେ ବି ରହେ ।

ଭାଲୁମାନେ ସାଧାରଣତଃ ବାଘ ସିଂହଙ୍କ ପରି ହିଂସ୍ରକ ନୁହନ୍ତି । ମେରୁପ୍ରଦେଶ ଭାଲୁଙ୍କୁ ଛାଡ଼ିଦେଲେ ଅନ୍ୟମାନେ କୌଣସି ଜୀବ ମାରି ଖାଇବାକୁ ବେଶି ଭଲପାଆନ୍ତି ନାହିଁ । ସେମାନେ ବଣର ଫଳମୂଳ ଖାଆନ୍ତି । ମହୁଲ ଓ ଡିମ୍ବିରିଫଳ ଖାଇବାକୁ ବେଶି ଭଲ ପାଆନ୍ତି । ଉଇ ସେମାନଙ୍କର ଅତି ପ୍ରିୟ ଖାଦ୍ୟ । ଉଇହୁଙ୍କାକୁ ମୁହଁରେ ଖୋଳି ତା ଭିତରର ଉଇ ଓ ଉଇଅଣ୍ଡାଙ୍କୁ ସବୁ ସେମାନେ ଆନନ୍ଦରେ ଖାଆନ୍ତି ।

ମହୁ ମଧ୍ୟ ଭାଲୁମାନଙ୍କର ଗୋଟିଏ ଭଲ ଖାଦ୍ୟ । ଗଛରେ ମହୁ ଫେଣା ଦେଖିଲେ ସେମାନେ ଚଢ଼ି ଫେଣାସହ ମହୁସବୁ ଖାଇଯାଆନ୍ତି ।

ଭାଲୁ ନଈ ଓ ଝରଣାରୁ ମାଛ ଧରି ଖାଉଥିବାର ଅନେକ ସମୟରେ ଦେଖାଯାଏ । ମେରୁ ପ୍ରଦେଶରେ ତ ଗଛ ଲତା କିଛି ନ ଥାଏ; ତେଣୁ ଫଳମୂଳ ମିଳେ ନାହିଁ । ମାଟି ଅଭାବରୁ ଉଇ ନ ଥାନ୍ତି କି ଉଇହୁଙ୍କା ନ ଥାଏ । ସେଠାର ଭାଲୁମାନେ କେବଳ ବରଫ ଚଳୁ ବା ସମୁଦ୍ରରୁ ମାଛ ଶିକାର କରି ଖାଆନ୍ତି । ମଣିଷ କି ଅନ୍ୟ ଜୀବଜନ୍ତୁ ଦେଖିଲେ ଚଢ଼ାଉ କରନ୍ତି । ମେରୁପ୍ରଦେଶର ଭାଲୁଙ୍କ ବେକ ଓ ମୁହଁ ଲମ୍ବା, ମୁଣ୍ଡଟା

Digitized by srujanika@gmail.com

ଅତ ସାନ । ବରଫ ଭିତରୁ ମୁହଁ ଗଳାଇ ଖାଦ୍ୟ ଖୋଜିବା ପାଇଁ ତାହା ସେପରି ତିଆରି ହୋଇଛି ।

" ଆମ ଦେଶର ଭାଲୁ ଟିକିଏ ଡରକୁଳା । ମଣିଷ ଦେଖିଲେ ସେମାନେ ପଳାଇ ଯାଇ ବଣରେ ଲୁଚନ୍ତି । କେବେ ଯଦି ବିପଦରେ ପଡ଼ିଥାଆନ୍ତି କିମ୍ବା ମଣିଷ ତାଙ୍କୁ ମାରିବାକୁ ଯାଇଛି ବୋଲି ବୁଝନ୍ତି, ତେବେ ମଣିଷ ଉପରେ ଚଢ଼ାଉ କରନ୍ତି । ରାମ୍ପୁଡ଼ି କାମୁଡ଼ି ମଣିଷକୁ ଖଣ୍ଡିଆ ଖାବରା କରିପକାନ୍ତି । ମଣିଷ ଯଦି ପଳାଇଯାଏ, ତେବେ ଭାଲୁ ତା ପଛରେ ନ ଗୋଡ଼ାଇ ନିଜ ବାଟ ନିଜେ ଧରେ ।

ବାଛୁରି, ଛେଳି, ମେଣ୍ଢା, ଚଢ଼େଇ ପ୍ରଭୃତି ସୁବିଧାରେ ପାଇଲେ ଭାଲୁମାନେ ମାରି ଖାଇଥାଆନ୍ତି; କିନ୍ତୁ ବାଘ ସିଂହଙ୍କ ପରି ବାଛୁରି, ଛେଳି, ମେଣ୍ଢା ଖୋଜି ବୁଲନ୍ତି ନାହିଁ ।

ଭାଲୁ ଦେହର ରୁମ ସବୁ ଖୁବ୍ ବଡ଼ ବଡ଼ । କେବଳ ରୁମ ପାଇଁ ଶିକାରୀମାନେ ଭାଲୁ ଶିକାର କରନ୍ତି । ଏହି ରୁମାଳ ସବୁ ଧନୀ ଲୋକେ ବହୁତ ଟଙ୍କା ଦେଇ କିଣନ୍ତି ।

ଭାଲୁର ପଛ ଦୁଇଗୋଡ଼ ଟିକିଏ ସାନ ଦେଖାଯାଏ, ମାତ୍ର ପ୍ରକୃତରେ ତାହା ସାନ ନୁହେ । ଭାଲୁ ଚାଲିଲାବେଳେ କେବଳ ତାର ପଛ ଗୋଡ଼ର ପଞ୍ଝା ତଳେ ଲାଗେ ନାହିଁ; ଆମ ପାଦ ପରି ଗୋଇଠିଠାରୁ ନଖଯାଏ ସବୁ ମାଟିରେ ଲାଗେ । ସେଇଥି ପାଇଁ ତାର ପଛ ଦୁଇ ଗୋଡ଼ ସାନ ଦେଖାଯାଏ । ଗୋଇଠିଠାରୁ ନଖଯାଏ ତଳେ ଲାଗୁଥିବାରୁ ଭାଲୁ ତାରି ଉପରେ ଭାରା ଦେଇ ଦୁଇ ଗୋଡ଼ରେ ଠିଆ ହୋଇପାରେ; ଦୁଇ ଗୋଡ଼ରେ କେତେକ ବାଟ ମଧ୍ୟ ଚାଲିଯାଏ । ମଣିଷକୁ ଦେଖିଲେ ସେ ମଣିଷ ପରି ଠିଆ-ହୋଇଯାଏ । ଆଗ ଦୁଇ ଗୋଡ଼ରେ ମଣିଷର ଦୁଇ ହାତକୁ ଧରି

Digitized by srujanika@gmail.com

କୃଷ୍ଟି କଳାପର ଲଢ଼େ । କେଳା ନଗ୍ଭଇଲ ବେଳେ ଭାଲୁ ପଛ ଦୁଇ ଗୋଡ଼ରେ ଠିଆ ହୋଇ ନାଚେ; ବାଜା ବାଜିଲେ ନାନା ପ୍ରକାର ଖେଳ ଦେଖାଏ ।

ଭାଲୁ ଗୋଡ଼ର ନଖଗୁଡ଼ାକ ବଙ୍କା ଓ ବଡ଼ ବଡ଼ । ସେଥିରେ ସେ ଜୀବଜନ୍ତୁଙ୍କୁ ଚିରିଦିଏ, ଗାମ୍ଭୁଡ଼ ପକାଏ । ତାର ଦାନ୍ତ ମଧ୍ୟ ଖୁବ୍ ମୁନିଆଁ । ଜିଭଟା କଣ୍ଟା କଣ୍ଟା ହୋଇଥାଏ; ତେଣୁ କାହାକୁ ଘୃଟିଦେଲେ, ତା ଦେହରୁ ପରସ୍ତେ ଚମ ଉଠିଯାଏ ।

ଆମ ଦେଶ ବଣରେ ଆଉ ଗୋଟିଏ ସ୍ଥାନ ଜାତିର ଭାଲୁ ଅଛନ୍ତି । ସେମାନେ ଦେଖିବାକୁ ମୋଟେ ସୁନ୍ଦର ନୁହନ୍ତି । ସେଗୁଡ଼ାକ ନିତାନ୍ତ ଅଳସୁଆ ଆଉ ଡରକୁଳା । ଦିନଯାକ ନିବିଡ଼ ଜଙ୍ଗଲ ଭିତରେ ଶୋଇ ରହିଥାଆନ୍ତି; ରାତି ହେଲେ ଖାଦ୍ୟ ଖୋଜି ବାହାରନ୍ତି । ସେମାନେ ଏଡ଼େ ଅଳସୁଆ ଯେ, ରାତି ହେଲେ ଯେଉଁଠାରୁ ବାହାରିଥାନ୍ତି, ଦିନ ହେଲେ ଆଉ ସେଠାକୁ ଫେରନ୍ତି ନାହିଁ । ଯେଉଁଠାରେ ରାତି ପାହେ, ସେହିଠାରେ ବଣ ଜଙ୍ଗଲ ଦେଖି ଶୋଇରହନ୍ତି । ତେଣୁ ତାଙ୍କର ନିର୍ଦ୍ଦିଷ୍ଟ ଘର ହୋଇ କିଛି ନ ଥାଏ । ଏମାନେ ଗଛ ଚଢ଼ିବାରେ ଖୁବ୍ ଧୁରନ୍ଧର । ଗୋଡ଼ର ମୁନିଆଁ ବଙ୍କା ନଖ ସାହାଯ୍ୟରେ ଖୁବ୍ ଶୀଘ୍ର ବଡ଼ ବଡ଼ ଗଛ ଉପରକୁ ଉଠିଯାଆନ୍ତି ଓ ଡାଳରେ ବସି ବହୁ ସମୟ କଟାଇ ଦେଇପାରନ୍ତି । ସମୟ ସମୟରେ ଗଛ ଡାଳରେ ନିଶ୍ଚିନ୍ତ ମନରେ ଭାଲୁ ଶୋଇ ରହିଥିବାର ମଧ୍ୟ ଦେଖାଯାଏ ।

—୨—

ଆମ ଓଡ଼ିଶାର ବଣମାନଙ୍କରେ ଭାଲୁ ପ୍ରାୟ ସବୁଆଡ଼େ ରହିଅଛନ୍ତି । ବଣ ଜଙ୍ଗଲର ପାଖଆଖ ଲୋକେ ତାଙ୍କୁ ମୋଟେ

Digitized by srujanika@gmail.com

ଡରନ୍ତି ନାହିଁ । ସେମାନେ ମଧ୍ୟ ନିତାନ୍ତ ଅସୁବିଧାରେ ନ ପଡ଼ିଲେ ମଣିଷ ଉପରେ ଚଡ଼ାଉ କରନ୍ତି ନାହିଁ; ମଣିଷଙ୍କ ସହିତ ସାଇ ପଡ଼ଶୀଙ୍କ ପରି ଚଳନ୍ତି । ତଥାପି କଥାରେ କହନ୍ତି, "ଗୃହ ଗୋଡ଼ିଆଙ୍କୁ ବିଶ୍ୱାସ ନାହିଁ ।" ଭାଲୁ ଯେତେବେଳେ ଗୃହ-ଗୋଡ଼ିଆ, ସେତେବେଳେ ତାଠାରୁ ସବୁବେଳେ ସାବଧାନ ରହିବା ଦରକାର ।

କୋରାପୁଟ ଜିଲ୍ଲାରେ ବେଶି ବଣ ଜଙ୍ଗଲ । ଲୋକେ ଅଧିକାଂଶ ସମୟରେ ବଣଭିତରକୁ କାଠ, କାଉଁଶ, ପତର, ଫଳମୂଳ ଆଦି ସଂଗ୍ରହ କରିବାକୁ ଯାଆନ୍ତି । ବିଶେଷତଃ କନ୍ଧୁଆ ଜାତିର ସ୍ତ୍ରୀଲୋକମାନେ ଗୋଟିଏ ଦାଆ ଓ ଟୋକେଇ ଧରି ବଣଭିତରେ ନିର୍ଭୟରେ ବୁଲନ୍ତି ।

ସେ ବଣରେ ବହୁତ ଭାଲୁ ବି ଅଛନ୍ତି । ଲୋକେ ବଣକୁ ଗଲାବେଳେ ଦୁଇ ଖଣ୍ଡ ଛୋଟ ଛୋଟ କାଠି ଅଣ୍ଟାରେ ଖୋସି ନେଇଥାଆନ୍ତି । ଯଦି ଭାଲୁ ହାବୁଡ଼ରେ ପଡ଼ନ୍ତି, ତେବେ ସେହି କାଠି ଯୋଗେ ତାଙ୍କଠାରୁ ରକ୍ଷା ପାଇଯାଆନ୍ତି ।

ଭାଲୁ ମଣିଷକୁ ଦେଖିଲେ ପଛ ଦୁଇଗୋଡ଼ରେ ଠିଆ ହୋଇ ତାଙ୍କ ପାଖକୁ ଧାଇଁ ଆସେ । ଆଗ ଦୁଇ ଗୋଡ଼ ଟେକି ମଣିଷକୁ ଧରିବାକୁ ବଢ଼ାଇ ଦିଏ—ଯେପରି କି ବାପ ମା ପିଲାଙ୍କୁ କୋଳ କରିବା ପାଇଁ ଦୁଇ ହାତ ବଢ଼ାଇ ଦିଅନ୍ତି । ଭାଲୁ ଅବଶ୍ୟ ମଣିଷକୁ ସ୍ନେହରେ କୋଳ କରିବାକୁ ହାତ ବଢ଼ାଏ ନାହିଁ । ମଣିଷକୁ ଦେଖିଲେ ସେ ମନେ କରେ—ଏ ମୋତେ ମାରିବାକୁ ଆସିଛି । ତେଣୁ ତାକୁ କାମୁଡ଼ି କିମ୍ବା ରାମ୍ପୁଡ଼ି ମାରି ପକାଇବାକୁ ଚାହେଁ । ସେ ଆଗ ଦୁଇ ଗୋଡ଼ରେ ମଣିଷର ଅଣ୍ଟାକୁ ଜାବୁଡ଼ି ଧରିବାପାଇଁ ଚେଷ୍ଟା କରେ । ସେତେବେଳେ

Digitized by srujanika@gmail.com

ବଣୁଆ ଲୋକେ ଅଣ୍ଟାରେ ଯେଉଁ ଦୁଇ ଖଣ୍ଡି କାଠି ଖୋସି ଥାଆନ୍ତି, ତାକୁ ବାହାର କରି ଦୁଇ ହାତରେ ଧରନ୍ତି । ଭାଲୁ ପାଖକୁ ଆସିଲେ, ତାର ଦୁଇ କାଖରେ ସେ କାଠି ଦୁଇ ଖଣ୍ଡି ଗୁଞ୍ଜି ଦଅନ୍ତି । ଭାଲୁକୁ କୁତୁକୁତୁ ଲାଗେ । ସେ ସାଙ୍ଗେ ସାଙ୍ଗେ ହାତ ଦୁଇଟି ପକାଇଦିଏ । କାଖତଳେ କାଠି ଦୁଇ ଖଣ୍ଡି ରହିଯାଏ । କାଳେ ହାତ ଟେକିଲେ ମଣିଷଟି ପୁଣି କୁତୁକୁତୁ କରିବ, ସେଥିପାଇଁ ସେ ଆଉ ହାତ ଟେକେ ନାହିଁ କି ମଣିଷକୁ ଧରିବାକୁ ଚେଷ୍ଟା କରେ ନାହିଁ । ହାତ ଦୁଇଟି ଦୁଇ ପାଟରେ ଜାକି ଦୁଇ ଗୋଡ଼ରେ ଠେଉଁଥାଏ । ଏହି ସମୟ ମଧ୍ୟରେ ମଣିଷଟି ତା ସାଙ୍ଗ ଲୋକଙ୍କୁ ଡାକି ନେଇ ଠେଙ୍ଗାରେ ତାକୁ ପିଟି ମାରି-ପକାଏ, ନ ହେଲେ ବଣରୁ ଲତା ଗଛର ଛେଲି ଆଦି ସଂଗ୍ରହ କରି ତାକୁ ସେଠାରେ ବାନ୍ଧି ପକାଇଦିଏ । କୁତୁକୁତୁ ଉପରେ ବିଚରାର ଜୀବନ ଥାଏ ।

ଆମ ଭିତରୁ ଅଧିକାଂଶ ଭାଲୁକୁ ବଣଭିତରେ ଏକୁଟିଆ ଦେଖିଲେ ଗୁହଁଆ ହୋଇଯିବା; ସେ ପାଖକୁ ନ ଆସୁଣୁ ତଳେ ପଡ଼ିଯିବା । ତା ସାଙ୍ଗରେ ଏପରି କତୁକୁତୁ ଖେଳିବାକୁ କେତେ ଜଣଙ୍କର ସାହସ ହେବ ? ବଣୁଆ ଲୋକେ ଆମଠାରୁ ବେଶି ସାହସୀ । ଆମେ ଗୋଟାଏ କୁକୁର କି ବିଲୁଆ ଦେଖିଲେ ଯେପରି ହୁରୁଡ଼ାଇ ଦେଉଁ, ବଣୁଆ ଲୋକେ ସେହିପରି ଭାଲୁ ଦେଖିଲେ ହୁରୁଡାଇ ଦଅନ୍ତି । ଆମ ଭଳି ସେ କେବେହେଲେ ଗୁହଁଆ ହୋଇ ତଳେ ପଡ଼ିଯିବେ ନାହିଁ ।

— ୩ —

ଥରେ ଗୋଟିଏ କୁମ୍ଭାରୁଣୀ ପତର କାଟିବାକୁ ବଣକୁ ଯାଇଥିଲା । ଖଣ୍ଡିଏ ଦାଆ, ଡାଳପାଜୁଡ଼ାରେ ଭିଆରେ ଗୋଟିଏ ଡାଲି ହିଁ ତାର ସମ୍ବଳ ଥିଲା । ସେ ବାଁ ହାତରେ ଡାଳପାଜୁଡ଼ା

Digitized by srujanika@gmail.com

ଡାଳରେ ମାଡ଼ି ଧରି ଖାଇବ ହାତ ପାଆରେ ବଡୁଚ କଣ୍ଟା ମଚର କାଟିଲା । ତାକୁ ଏକାଠି କରି ବଡ଼ା ବାନ୍ଧ ଗଛକୁ ଡେରି ରଖିଲା । ସେହି ପଚରବଡ଼ାକୁ ପଣ୍ଡୁଅ କୁହାଯାଏ । ତଳେ ଶୁଆଇ ରଖିଲେ ଏକୁଟିଆ ଟେକ ମୁଣ୍ଡାଇପାରିବ ନାହିଁ, ତେଣୁ ପଣ୍ଡୁଅଗୁଡ଼ିକୁ ଠିଆ କରି ଗଛକୁ ଡେରି ରଖୁଥାଏ ।

ପାଖରେ ଗୋଟିଏ ଭାଲୁ ଛୁଆ ଦେଇଥାଏ । କୁମ୍ଭାରୁଣୀକୁ ସେ କଥା ମୋଟେ ଜଣା ନାହିଁ । ଭାଲୁଟି ଛୁଆ ମାଖରେ ଚୁପ ହୋଇ ଶୋଇରହି ସବୁ ଦେଖୁଥାଏ । ସେ ମଧ୍ୟ ସେଠାରୁ ଉଠୁ ନ ଥାଏ କି ସେଠାରେ ଅଛି ବୋଲି ଜଣାଇ ଦେଉ ନ ଥାଏ ।

କୁମ୍ଭାରୁଣୀ ଦୁଇ ତିନଟା ପଣ୍ଡୁଅ ଠିଆ କରି ରଖିଲା । ଶେଷକୁ ଆଉ ଗୋଟାଏ ପଣ୍ଡୁଅ ବାନ୍ଧ ଗଛକୁ ଲଗାଇ ଠିଆ କଲାବେଳକୁ ତାହା ତଳେ ପଡ଼ିଗଲା । ଦୈବଯୋଗକୁ ଭାଲୁ ଛୁଆଟା ମା ପାଖରୁ କିଛି ବାଟ ପଦାକୁ ଚାଲି ଆସିଥିଲା । ତା ଉପରେ ପଣ୍ଡୁଅ ପଡ଼ିପିବାରୁ ସେ କେଁ କେଁ ବୋବାଇ ଉଠିଲା । ମୁହୂର୍ତ୍ତକ ମଧ୍ୟରେ ରକ୍ତ ବାନ୍ତି କରି ମରିଗଲା ।

ମା ଭାଲୁ ଆଖିଆଗରେ ଏହା ଘଟିଗଲା । ସେ କଅଣ ଆଉ ସମ୍ଭାଳି ହୋଇ ରହିପାରେ ? ରାଗରେ ଗର୍ଜନ କରି କୁମ୍ଭାରୁଣୀ ପାଖକୁ ଦଉଡ଼ି ଆସିଲା । ଆଗ ଦୁଇ ଗୋଡ଼ ବଢ଼ାଇ ତା ଅଣ୍ଟାକୁ ଜାବୁଡ଼ି ଧଇଲା; ଦାନ୍ତ ଦେଖାଇ ତାକୁ କାମୁଡ଼ି ପକାଇବାକୁ ବାହାରିଲା ।

କୁମ୍ଭାରୁଣୀ ହାତରେ ପିତଳର ଖଡ଼ୁ ଓ ଚୁଡ଼ି ଥାଏ । ତାହା ପୁଣି ପାପୁଲିଠାରୁ ହାତର ଗଣ୍ଠି ଯାଏ ଲାଗି ରହିଥାଏ । କୁମ୍ଭାରୁଣୀ ଅନ୍ୟ କିଛି ଉପାୟ ନ ପାଇ ତା ବାଁ ହାତଟାକୁ

Digitized by srujanika@gmail.com

ଭାଲୁ ପାଟିରେ ପୂରାଇଦେଲା । ଭାଲୁ ରାଗରେ କାମୁଡ଼ିଦେବ ବୋଲି ଦାନ୍ତ ଘୃଞ୍ଚିଦେବାରୁ ପିତ୍ତଳଖଣ୍ଡରେ ଦାନ୍ତ ବାଜି ସାଙ୍ଗେ ସାଙ୍ଗେ ଦୁଇ ତିନୋଟା ଦାନ୍ତ ଝଡ଼ି ପଡ଼ିଲା ।

କୁମ୍ଭୀରୁଣୀ ମଧ୍ୟ ହାତ ବୁଲାଇ ଭାଲୁର ଜିଭଟାକୁ ଖୁବ୍ ଜୋରରେ ଧରିନେଲା । ଏଣେ ଖାଇବ ହାତରେ ଧରିଥିବା ଦାଆରେ ଗଛରୁ ପତର କାଟିଲାଭଳି ତା ତଳପେଟକୁ କାଟିବାରେ ଲାଗିଗଲା । ଭାଲୁ ପ୍ରାଣବିକଳରେ ପଳାଇବାକୁ ଚେଷ୍ଟା କଲା; ମାତ୍ର ଯାଇପାରିଲା ନାହିଁ । ଆଗ ଗୋଡ଼ ଦୁଇଟା କୁମ୍ଭୀରୁଣୀ ଅଣ୍ଟାରେ ଯାକ ପଡ଼ିଯାଇଛି, ତେଣେ ଜିଭକୁ କୁମ୍ଭୀରୁଣୀ ଖୁବ୍ ଜୋରରେ ଧରିଛି । ପେଟ କଟା ହୋଇ ଅନ୍ତବୁଜୁଳା ବାହାରି ପଡ଼ିଲାଣି । ସେପରି ଅବସ୍ଥାରେ ସେ ଆଉ ଯିବ କିପରି ? ସେଇଠାରେ ଢଳିପଡ଼ିଲା । କୁମ୍ଭୀରୁଣୀ ମଧ୍ୟ ତା ସାଙ୍ଗେ ସାଙ୍ଗେ ତଳେ ପଡ଼ିଗଲା ।

ଭାଲୁ ଦୁର୍ବଳ ହୋଇ ପଡ଼ିବାରୁ କୁମ୍ଭୀରୁଣୀ ବହୁ କଷ୍ଟରେ ତା ହାତରୁ ନିଜକୁ ମୁକୁଳାଇଲା । ପାଟିରୁ ହାତ ଘୋଷାରି ବାହାର କଲା । ଅଣ୍ଟାର ପଛପଟ ଭାଲୁ ନଖରେ କଣା ହୋଇ ଯାଇଛି, ଦାନ୍ତ ବାଜି ହାତର ଦୁଇ ଚାରି ଜାଗାରୁ ରକ୍ତ ବାହାରୁଛି । ଏ ଯୁଦ୍ଧରେ ମଧ୍ୟ ସେ ଟିକିଏ ଦୁର୍ବଳ ହୋଇ ପଡ଼ିଥିଲା । ଆଗ ଗଛମୂଳେ ବସିପଡ଼ି ବିଶ୍ରାମ ନେଲା ।

ଏହି ସମୟରେ ସେ ଦେଖିଲା, ଭାଲୁ ଛୁଆଟିଏ ଆସି ମା ଚାରିପାଖରେ ବୁଲୁଛି, ମା ମୁହଁରେ ମୁହଁ ରଖି ଶୁଙ୍ଘୁଛି । ଭାଲୁର ଗୋଟିଏ ଛୁଆ ତ ପଣ୍ଡୁଅତଳେ ମରି ଯାଇଥିଲା । ଆଉ ଗୋଟିଏ ଛୁଆ ଥିଲା, ସେ ମାଆକୁ ଖୋଜି ଖୋଜି ସେଠାରେ

Digitized by srujanika@gmail.com

ପଡ଼ୁଅଛି । ମା ମରିଗଲାଣି ବୋଲି ସେ ତ ଜାଣେ ନାହିଁ, ତାଠାରୁ ଦୁଧ ଖାଇବ ବୋଲି ଦଉଡ଼ି ହେଉଛି ।

କୁମ୍ଭାରୁଣୀ ମନରେ ଦୟା ହେଲା । ସେ ଛୁଆଟିକୁ ଧରି ନିଜ ଘରକୁ ଆଣିଲା । ଦୁଧ ଭାତ ଖାଇବାକୁ ଦେଇ ଅତି ଯତ୍ନରେ ପାଳିଲା । ଯେପରି ଛେଳି ମେଣ୍ଢା ପୋଷା ମାନନ୍ତି, ସେ ଭାଲୁ-ଛୁଆଟି ପରେ ସେହିପରି ପୋଷା ମାନିଥିଲା ।

—୪—

ଅନେକେ କହନ୍ତି, ଭାଲୁ ମଲା ମଣିଷ ଖାଏ ନାହିଁ; କିନ୍ତୁ ଏହା ଠିକ୍ ନୁହେଁ । ମାଂସ ଖାଇବାକୁ ଯେଉଁ ଭାଲୁର ମନ ହେବ, ସେ କି ମଲା କି ଜୀଅନ୍ତା ସବୁ ଜନ୍ତୁର ମାଂସ ଖାଇବ । ତଥାପି ଅନେକ ସମୟରେ ମଣିଷ ବଣଭିତରେ ମଲା ପରି ପଡ଼ିରହି ଭାଲୁ ମୁହଁରୁ ରକ୍ଷା ପାଇଥିବା କଥା ଶୁଣାଯାଏ ।

ଥରେ ଦୁଇଟି ସାଙ୍ଗ ବଣଭିତରେ ଯାଉଥିଲେ । ଗୋଟିଏ ଖୁବ୍ ବଳୁଆ; କିନ୍ତୁ ତା ମୁଣ୍ଡରେ ବୁଦ୍ଧି ଶୁଦ୍ଧି କିଛି ନ ଥାଏ । ଅନ୍ୟ ବନ୍ଧୁଟି ବଡ଼ ଦୁର୍ବଳ; କିନ୍ତୁ ଟିକିଏ ବୁଦ୍ଧିଆ ଓ ସାହସୀ ମଧ୍ୟ ।

ବାଟେ ଚାଲିଲାବେଳେ ଦୁର୍ବଳିଆ ବନ୍ଧୁଟି କହିଲା; "ଭାଇ, ଯଦି ବଣ ଭିତରେ ବାଘ କି ଭାଲୁ ଭେଟିବ, ତେବେ ଆମେ କଅଣ କରିବା ? ଆମ ହାତରେ ତ ବାଡ଼ି ଖଣ୍ଡେ ସୁଦ୍ଧା ନାହିଁ । ଅକାରଣରେ ତାଙ୍କ ମୁହଁରେ ପ୍ରାଣ ଦେବା ସିନା !"

ବଳୁଆ ବନ୍ଧୁଟି ଉତ୍ତର ଦେଲା—"ତୁମେ ଏତେ ଡରୁଛ କାହିଁକି ? ମୁଁ ସାଙ୍ଗରେ ଥିବାଯାଏ ଆମର ବାଘ ଭାଲୁ କିଛି କରିପାରିବେ ନାହିଁ । ମୋର କେତେ ବଳ, ତୁମେ ଜାଣ ନାହିଁ ? ମୁଁ ଲଢ଼େଇ କରି ସେମାନଙ୍କୁ କାବୁ କରିଦେବି ।"

Digitized by srujanika@gmail.com

ଦୁଇ ବନ୍ଧୁ ବାଟ ଚାଲିଲେ । ନିବିଡ଼ ବଣଭିତରେ ସତକୁ ସତ ଗୋଟାଏ ଭାଲୁ ବାହାରିଲା । ଭାଲୁକୁ ଦେଖି ଦୁଇ ବନ୍ଧୁ ଡରିଗଲେ । ବଳୁଆ ବନ୍ଧୁଟି ଆଉ କିଛି ନ ଭାବି ପାଖରେ ଥିବା ଗଛରେ ଚଢ଼ିଗଲା; ପତ୍ରଗହଳରେ ଲୁଚି ବସିଲା । ତାର ସାଙ୍ଗଟିର ଅବସ୍ଥା କଅଣ ହେବ, ସେକଥା ଟିକିଏ ହେଲେ ଭାବିଲା ନାହିଁ ।

ଏଣେ ଦୁର୍ବଳ ବନ୍ଧୁଟି ଗଛ ଚଢ଼ି ଜାଣେ ନାହିଁ, କିପରି ଭାଲୁ ହାତରୁ ରକ୍ଷା ପାଇବ ? ଭାଲୁ ଆସି ଆଉ ଅଳ୍ପ ଦୂରରେ; ପଳାଇ ଯିବାର ଉପାୟ ନାହିଁ । ସେ ସେଇଠାରେ ତଳେ ଲମ୍ବ ହୋଇ ଶୋଇପଡ଼ିଲା । ନିଶ୍ୱାସ ବନ୍ଦ କରିଦେଲା— ସତେ ଯେପରି ଗୋଟାଏ ମଲାମଣିଷ ପଡ଼ିରହିଛି ।

ଭାଲୁ ଆସି ପାଖରେ ପହଞ୍ଚିଲା । ଗୋଟାଏ ମଣିଷ ପଡ଼ିଥିବାର ଦେଖି ସେ ଆଗ ତା ଦେହରେ ଗୋଡ଼ ମାଇଲା । ମାତ୍ର ମଣିଷଟି ଆଦୌ ହଲଚଲ ହେଲା ନାହିଁ । ତା ଛାତି ଉପରେ ଗୋଡ଼ ରଖିଲା । ମୁହଁରେ ମୁହଁ ଦେଇ ଶୁଙ୍ଘିଲା, ନାକ ପାଖରେ ମୁହଁ ରଖି ନିଶ୍ୱାସ ବାରିଲା । କିନ୍ତୁ କୌଣସିଥିରେ ହେଲେ ଲୋକଟି ବଞ୍ଚିଛି ବୋଲି ଜାଣିପାରିଲା ନାହିଁ । କିଛି ସମୟ ତା ପାଖରେ ଠିଆହୋଇ ଏ ପାଖ ସେ ପାଖ ବୁଲିଲା । ପଛକେ ସେଇଟା ମଲାମଣିଷ ଭାବି ସେଠାରୁ ଚାଲିଗଲା ।

କିଛି ସମୟ ପରେ ଲୋକଟି ତଳୁ ଉଠି ବସିଲା । ବଳୁଆ ବନ୍ଧୁଟି ଗଛ ଉପରେ ବସି ଭୟରେ ଥରୁଥାଏ । ଏ ଉଠି ବସିବାରୁ ସେ ଗଛରୁ ଓହ୍ଲାଇ ଆସିଲା । ପୁଣି ଦୁହେଁ ସାଙ୍ଗ ସାଙ୍ଗ ହୋଇ ବାଟ ଚାଲିଲେ ।

Digitized by srujanika@gmail.com

ଜନ୍ତୁ ଗଛରେ ଚଢିଥିବା ବନ୍ଧୁଟିର ମନ ଗୁଡ଼୍ ଗୁଡ଼୍ ହେଉଥାଏ । ସେ ଆଉ ମନକଥା ସମ୍ଭାଳି ରଖିପାରିଲା ନାହିଁ । ପଚାରିଲା, "ଭାଇ, ଭାଲୁ ତ ତୁମକୁ କାମୁଡ଼ିଲା ନାହିଁ; ବରଂ ତୁମକୁ ଶ୍ରଦ୍ଧା କଲା ପରି ଦେଖାଗଲା । ଥରକୁ ଥର ତୁମ ମୁହଁ ପାଖରେ ମୁହଁ ରଖୁଥାଏ; କଅଣ କହୁଥିଲା ପରି ଜଣା ପଡ଼ୁଥାଏ । ସେପରି କାହିଁକି କଲା ?"

ତଳେ ଶୋଇଥିବା ବନ୍ଧୁଟି ଉତ୍ତର ଦେଲା—"ଏଇଟା ସାଧାରଣ ଭାଲୁ ନୁହେଁ, ଏ ଲକ୍ଷ୍ମୀ ଭାଲୁ । ବଣରେ ସମୟ ସମୟରେ ଲକ୍ଷ୍ମୀ ଭାଲୁ ଦେଖାଯାଆନ୍ତି । ସେମାନେ ମଣିଷଙ୍କୁ ଖାଇବା ଦୂରେ ଥାଉ, ସେମାନଙ୍କର ବଡ଼ ବନ୍ଧୁ ହୋଇଥାନ୍ତି, ସେମାନଙ୍କୁ ନାନା ଆପଦ ବିପଦରୁ ରକ୍ଷା କରନ୍ତି, କେତେ ପ୍ରକାର ସତ୍‌ଶିକ୍ଷା ଦିଅନ୍ତି । ଉପଯୁକ୍ତ ଲୋକ ଦେଖିଲେ, ମଣିଷଙ୍କ ପରି ତାଙ୍କ ସହିତ କଥାବାର୍ତ୍ତା କରନ୍ତି ।"

ଜନ୍ତୁଆ ବନ୍ଧୁ ପୁଣି ପଚାରିଲା—"ସେ କଅଣ ତୁମ ସାଙ୍ଗରେ କଥାବାର୍ତ୍ତା କଲା ?"

"ହଁ, ମୋତେ କେତୋଟି ଭଲ କଥା ଶିଖାଇଦେଇ ଗଲା । ମୁଁ ଜୀବନରେ କଦାପି ତା କଥା ଭୁଲିପାରିବି ନାହିଁ"—ବିଶ୍ୱାସୀ ବନ୍ଧୁଟି ଉତ୍ତର ଦେଲା ।

"ଭାଲୁ ତୁମକୁ କଣ କହିଲା, ତା କଅଣ ମୋତେ କହିବ ନାହିଁ ?"

ଏ ପ୍ରଶ୍ନ ଶୁଣି ବିଶ୍ୱାସୀ ବନ୍ଧୁ ମୁହଁକୁ ଗମ୍ଭୀର କରି କହିଲା—"ଅବଶ୍ୟ ସେ କଥାଗୁଡ଼ାକ ଅନ୍ୟକୁ କହିବାର ନୁହେଁ । ତଥାପି ତୁମେ ମୋ ବନ୍ଧୁ, ତୁମକୁ କେବଳ କହୁଛି; ଆଉ କାହାକୁ କହିବ ନାହିଁ ।"

Digitized by srujanika@gmail.com

ଏହା କହି ସେ ଟିକଏ ଚୁପ୍ ହୋଇଗଲା । ଗଛ ଚଢ଼ା ବନ୍ଧୁଟି ଭାଲୁ କଥା ଶୁଣିବାକୁ ତା ମୁହଁକୁ ଚାହିଁ ରହିଥାଏ ।

ଟିକକ ପରେ ସେ ପୁଣି କଥା ଆରମ୍ଭ କଲା । "ଭାଲୁ କହିଲା, ଯେଉଁ ବନ୍ଧୁ କଥା ଦେଇ ତାହା ରଖେ ନାହିଁ, ସେ ବନ୍ଧୁକୁ ବିଶ୍ୱାସ କରିବ ନାହିଁ । ଯେଉଁ ବନ୍ଧୁ ପରକଥା ନ ଭାବି କେବଳ ନିଜ ସୁବିଧା ସୁଯୋଗ ଦେଖେ, ତା ସାଙ୍ଗରେ ସାଙ୍ଗ ହେବ ନାହିଁ । ବନ୍ଧୁ ବିପଦରେ ପଡ଼ିଛି ଦେଖି ଯେ ପଳେଇଯାଏ, ସେ ବନ୍ଧୁ ନୁହେ ଶତ୍ରୁ । ଏହି ତିନୋଟି କଥା ଭାଲୁ ମୋତେ ଶିଖାଇଦେଇ ଗଲା ।"

ଏହା ଶୁଣି ବନ୍ଧୁଆ ବନ୍ଧୁଟିର ମୁହଁ କଳା ପଡ଼ିଗଲା । ସେ ମନେ ମନେ ଭାବିଲା, "କେବଳ ମୋତେ ଦେଖାଇ ଏକଥା ଏ କହୁଛି । ମୁଁ ତାକୁ ବାଘ ଭାଲୁଙ୍କ ମୁହଁରୁ ରକ୍ଷା କରିବି ବୋଲି ଜବାବ ଦେଇଥିଲି; କିନ୍ତୁ ଭାଲୁ ଆସିଲାବେଳେ କଥା ରଖିପାରିଲି ନାହିଁ । ବନ୍ଧୁର ଦଶା କଅଣ ହେବ ନ ଭାବି ନିଜେ ଗଛଉପରେ ଚଢ଼ି ନିରାପଦରେ ବସି ରହିଲି । ପ୍ରକୃତରେ ମୁଁ ବନ୍ଧୁ ହେବାକୁ ଉପଯୁକ୍ତ ନୁହେ ।"

—୪—

ଜଣେ ଲୋକ ଅଦ୍ଭୁତ ପ୍ରକାରରେ ଭାଲୁଠାରୁ ରକ୍ଷା ପାଇଥିଲା ।

ମହାଜନଙ୍କର ଜଙ୍ଗଲଭିତରେ ଗୋଟାଏ କଚେରି ଘର ଥାଏ । ମହାଜନ ଜଙ୍ଗଲ ଠିକା ନେଇଥାଆନ୍ତି । ଯେଉଁମାନେ ଜଙ୍ଗଲରୁ ପଥର, ଡାଳକାଠି, ମହୁ, ମହଣ ଆଦି ଆଣନ୍ତି, ସେମାନେ କଚେରିରେ ଟଙ୍କା ଦେଇ ତାହା ଆଣନ୍ତି । ସେ ବର୍ଷ କଚେରିରେ ବହୁତଗୁଡ଼ିଏ ଟଙ୍କା ଜମା ହେଲା ।

Digitized by srujanika@gmail.com

ସେ ସମୟରେ ବେଶି ନୋଟ କାରବାର ହେଉ ନ ଥିଲା; ଖାଲି ଟଙ୍କା ଏବଂ ଅଧୁଲି, ସୁଉକି, ଦୋଉକି । କଚେରିରେ ଥିବା ଗୃମାସ୍ତା ସେ ଟଙ୍କା ପଇସାଗୁଡ଼ିକୁ ଜଣେ ଚପରାଶି ହାତରେ ମାଲିକଙ୍କ ପାଖକୁ ପଠାଇଦେଲେ । ଚପରାଶି ନିଜ ଗାମୁଛାରେ ଟଙ୍କାତକ ପୁଡ଼ା କରି ଅଣ୍ଟା ଚାରିପାଖେ ଗୁଡ଼ାଇ ବାନ୍ଧିଦେଲା । ଖଣ୍ଡିଏ ବାଡ଼ିର ଦେହରେ ପକାଇ ମହାଜନଙ୍କ ଘରକୁ ଚାଲିଲା ।

କେତେ ବାଟ ଆସିଲା ପରେ ବଣରୁ ଗୋଟାଏ ଭାଲୁ ବାହାରିଲା—ମସ୍ତବଡ଼ ଭାଲୁ । ଭାଲୁମାନଙ୍କର ତ ସ୍ୱଭାବ, ମଣିଷକୁ ଦେଖିଲେ ସେମାନେ ପଛ ଦୁଇ ଗୋଡ଼ରେ ଚାଲିଚାଲି ପାଖକୁ ଆସନ୍ତି । ମଣିଷଙ୍କୁ କୋଳ କରିବାପାଇଁ ଆଗ ଦୁଇ ଗୋଡ଼ ବଢ଼ାଇ ଦେଇଥାନ୍ତି ।

ସେ ଭାଲୁ ଦୁଇ ହାତ ବଢ଼ାଇ ଚପରାଶି ଆଗରେ ଠିଆ ହୋଇଗଲା । ପାଖରେ ଗୋଟାଏ ଗଛ ଥାଏ । ଚପରାଶି ସେ ଗଛ ଉହାଡ଼କୁ ଚାଲିଗଲା । ଭାଲୁ ଗଛ ଆର ପାଖରେ ରହି ସେହିପରି ହାତ ଦୁଇଟା ବଢ଼ାଇ ଥାଏ ।

ଏତିକି ବେଳେ ଚପରାଶି ମୁଣ୍ଡରେ ଗୋଟାଏ ବୁଦ୍ଧି ଖେଳିଗଲା । ସେ ଗଛର ଦୁଇ ପାଖରେ ଦୁଇ ହାତ ବଢ଼ାଇ ଭାଲୁର ହାତ ଦୁଇଟାକୁ ଧରି ପକାଇଲା । ପ୍ରାଣବିକଳରେ ଏତେ ଜୋରରେ ସେ ଧରିଲା ଯେ, ହାତ ମୁଠା ପଡ଼ିଗଲା । ଭାଲୁକୁ ଅବଶ୍ୟ ଟିକିଏ କାଟିଥିବ । ଏଣେ ମଣିଷ ମାଂସ ଖାଇବା ପାଇଁ ମଧ୍ୟ ସେ ଉଚ୍ଛନ୍ନ । ତେଣୁ ଚପରାଶିକୁ କାମୁଡ଼ିବା ପାଇଁ ଗଛ ଚାରିପାଖ ବୁଲିବାକୁ ଲାଗିଲା । ଏ ପାଖରେ ମଣିଷଟି ମଧ୍ୟ ସେହିପରି ବୁଲୁଥାଏ । ମଝିରେ ଗଛ ଥିବାରୁ ଭାଲୁ ମଣିଷକୁ କାମୁଡ଼ିପାରୁ ନ ଥାଏ ।

Digitized by srujanika@gmail.com

ଦୁହେଁଯାକ ଏହିପରି ବହୁତ ବେଳ ଧରିଲେ । ମୁହୂର୍ତ୍ତେ ହେଲେ ବିଶ୍ରାମ ନାହିଁ । ଘୂରାଘୂରିର ଚପରାଶି ନସ୍ୟାନ୍ତ ହୋଇ ଗଲାଣି । ସର୍ବାଙ୍ଗରୁ ଗମଗମ ଝାଳ ବହି ପଡ଼ୁଛି । ଦେହରୁ ଚଦର ଖସିଯାଇ କୁଆଡେ ପଡ଼ିଲାଣି । ଅଣ୍ଟାରୁ ଗାମୁଛା ଫିଟି ଗଛ ଚାରିପାଖଯାକ ଟଙ୍କାପଇସା ବୁଣି ହୋଇଗଲାଣି । ଘୂରିବା ପାଇଁ ଆଜ ତା ଦେହରେ ବଳ ନାହିଁ । ଏଣେ ଭାଲୁକୁ ଛାଡ଼ିପାରୁ ନାହିଁ । ଭାଲୁ ଯେପରି ରାଗିଗଲାଣି, ଛାଡ଼ିଦେଲେ ସାଙ୍ଗେ ସାଙ୍ଗେ ଆସି ମାଡ଼ିବସିବ । ବିଚରା ଆଜ କରିବ କଅଣ ? ଗଛକୁ ମଝିରେ ରଖି ସେ ଭାଲୁକୁ ଘୂରାଉଛି, ନିଜେ ବି ଘୂରୁଛି । ତା ମୁଣ୍ଡ ବାତଚକ୍ର ପରି ଘୂରିଲାଣି; ଆଖିକୁ ସବୁଆଡ଼ ଅନ୍ଧାର ଦେଖାଗଲାଣି । ଚପରାଶିଟି ବିକଳରେ ମନେମନେ ଠାକୁରଙ୍କୁ କେତେ ଡାକୁଥାଏ ।

ଶେଷକୁ ଠାକୁରଙ୍କର ଦୟା ହେଲା । ଜଣେ ଲୋକ ସେ ବାଟେ ଆସୁଥିଲା । ସେଠାରେ ପହଞ୍ଚି ଭାଲୁ-ମଣିଷ ଖେଳ ଦେଖିଲା । ଆଉ ମଧ୍ୟ ଦେଖିଲା, ସେ ଘୂରିବା ବାଟରେ ଗୁଡ଼ାଏ ଟଙ୍କା ପଇସା ବିଞ୍ଚି ହୋଇ ପଡ଼ିଛି । ଏକଥା କିଛି ସେ ବୁଝିପାରିଲା ନାହିଁ । କିଛି ସମୟ ଆବାକାବା ହୋଇ ଠିଆହେଲା । ତା ପରେ ଚପରାଶିକୁ ଚାହିଁ ପଚାରିଲା, "ଏ କଅଣ ହେଉଛି କି ?"

ଚପରାଶି ଟିକିଏ ଚାଲାଖ କନା ! ସେ ସାଙ୍ଗେ ସାଙ୍ଗେ କହି ଉଠିଲା, "ଏ ଭାଲୁଟା ଗୋଟାଏ ଜଙ୍ଗ । ଏହା ପେଟରେ ଟଙ୍କା ପଇସା ପୂରି ରହିଛି । ଏହାକୁ ଏପରି ଧରି ଘୂରାଇଲେ ଏ ଟଙ୍କା ପଇସା ହଗି ପକାଉଛି । ତଳେ ଯେଉଁସବୁ ଟଙ୍କା ପଡ଼ିଛି, ତାହା ଏଇ ଭାଲୁ ପେଟରୁ ବାହାରିଛି ।"

Digitized by srujanika@gmail.com

ଏହା ଶୁଣି ଲୋକଟିର ଭାରି ଲୋଭ ହେଲା । ସେ କହିଲା, "ଭାଇ, ତୁମ ଗୋଡ଼ତଳେ ପଡ଼ୁଛି, ମୋତେ କିଛି ସମୟ ଛୁଟି ଦିଅ । ମୁଁ ତାକୁ ଗଛ ମୂଳପାଖ ଯାଇ ରଖିବି । ଯେତେକ ଟଙ୍କା ପଇସା ମିଳିବ, ସେତକ ମୁଁ ନେବି । ତା ପରେ ତୁମ ଭାଲୁ ତୁମକୁ ଦେଇ ଦେବି ଯେ । ସତ କହୁଛି, ମୁଁ ବେଶି ଲୋଭ କରିବି ନାହିଁ; ଅଧଘଣ୍ଟାଏ ମାତ୍ର ଦୂରେଇବି ।"

ଭାଲୁ ହାତରୁ କେବେ ରକ୍ଷା ପାଇବ, ସେଥିପାଇଁ ତ ସେ ମନେ ମନେ ବଡ଼ ବ୍ୟାକୁଳ ହେଉଥିଲା । ବାଟୋଇ କଥା ଶୁଣି ଖୁସି ହୋଇଗଲା; କିନ୍ତୁ ମୁହଁଟି ଶୁଖାଇ କହିଲା, "ହଉ, ଏତେ ଯଦି କହୁଛ, ତେବେ ଭାଲୁକୁ ଧର, ଅଧଘଣ୍ଟାକ ପରେ ମୋତେ ଛାଡ଼ିଦେବ । ଆଉ ଏଇ ଅଧଘଣ୍ଟାକ ମଧ୍ୟରେ ଯାହା ଟଙ୍କା ପଇସା ମିଳିବ, ସେଥିରୁ ମୋତେ ଅଧା-କିଛି ଭାଗ ଦେବ ।" ଏକଥା କହିବା ସାଙ୍ଗେ ସାଙ୍ଗେ ବ ସେ ଗଛ ମୂଳପାଖରେ ଭାଲୁ ସାଙ୍ଗରେ ବୁଲୁଥାଏ ।

ଲୋକଟା ଖୁସିରେ ଯାଇଁ ଭାଲୁର ଦୁଇ ହାତ ଧଇଲା । ତପସ୍ୱିଣି ଭାଲୁ ହାତରୁ ନିଜ ହାତ ମୁକୁଳାଇ ଆଗ ଟଙ୍କା ପଇସା-ତକ ଗୋଟାଇ ପକାଇଲା । ଏଣେ ଲୋକଟି ଭାଲୁର ଦୁଇ ହାତକୁ ଯାଉପର୍ଯ୍ୟନ୍ତ ଜୋରରେ ଧରି ଗଛ ମୂଳକଡ଼ ବୁଲୁଛି ।

ତପସ୍ୱିଣି ଟଙ୍କା ପଇସା ଗୋଟେଇ ପୁଣି ଗାମୁଛାରେ ବାନ୍ଧିଲା । ପିଠିରେ ବୋକଚ୍ କରି ପକାଇ ନିଜ ବାଟରେ ଚାଲିଗଲା । ଏ ଲୋକଟି ଭାଲୁ ସାଙ୍ଗରେ ବୁଲୁଥିବାରୁ ତେଣେ ଆଉ ନଜର ନ ଥାଏ । କିଛି ବାଟ ଯାଇ ତପସ୍ୱିଣି ଏଡ଼େ ଜୋରରେ ଧାଇଁଲା ଯେ, ସହରରେ ନ ପହଞ୍ଚିବା ପର୍ଯ୍ୟନ୍ତ ତା ଗୋଡ଼ ଆଉ ରହିଲା ନାହିଁ ।

Digitized by srujanika@gmail.com

ସହରରେ ମହାଜନଙ୍କ ଆଗରେ ସବୁ କଥା କହିଲା । ସେତେବେଳକୁ ରାତି ହୋଇଯାଇଥାଏ । ପରଦିନ ସକାଳେ ଆଉ ଦୁଇ ଚାରିଜଣ ଲୋକଙ୍କୁ ସାଙ୍ଗରେ ଧରି ଘଟଣାସ୍ଥଳକୁ ଆସିଲା । ଦେଖିଲା, ଲୋକଟି ମରି ପଡ଼ିଛି । ଘଲୁର ଗମ୍ଭୂଡ଼ା କାମୁଡ଼ାରେ ତାର ସର୍ବାଙ୍ଗ ଖଣ୍ଡିଆ ଖାବରା ।

ସେ ଲୋକ ବହୁବେଳ ଘଲୁକୁ ଦୂରାଇଲା; ମାଟ ଟଙ୍କା ଦୂରେ ଥାଉ, ପଇସ ଟଏ ବି ଘଲୁ ପେଟରୁ ବାହାରିଲା ନାହିଁ । କ୍ରମେ ଲୋକଟି କ୍ଲାନ୍ତ ହୋଇ ପଡ଼ିଲା । ଦେଖିଲି, ସେ ଲୋକଟି କୁଆଡ଼େ ପଳାଇ ଗଲାଣି । ସେତେବେଳକୁ ସବୁ କଉଶଳ ସେ ବୁଝି ପାରିଲା, ତା ମନ ଦବିଗଲା, ହାତ କୋହଲ ହୋଇପଡ଼ିଲା ।

ଘଲୁ ସୁଯୋଗ ପାଇ ତା ହାତରୁ ଖସିଗଲା । ଏତେ କଷ୍ଟ ପାଇଥିବାରୁ ସେ ତ ରାଗରେ ଛାଟି ହେଉଥିଲା । ସାଙ୍ଗେ ସାଙ୍ଗେ ଆସି ଲୋକଟି ଉପରେ ଚଢ଼ି ବସିଲା; କାମୁଡ଼ି ଗମ୍ଭୂଡ଼ି ନିଜ ଓରମାନ ମେଣ୍ଟାଇଲା ।

ଟଙ୍କା ପାଇବ ବୋଲି ଲୋଭ କରି ଶେଷରେ ବିଚରା ନିଜ ଜୀବନଟି ଦେଲା ।

—୭—

କାର୍ତ୍ତିକ ମାସ, ଦୁଇ ଦିନ ହେଲା ଝଡ଼ବର୍ଷା ଲାଗି ରହିଥାଏ । ସକାଳୁ ମଧ୍ୟ ଟିକଏ କନକନିଆ ଶୀତ ହେଉଥାଏ ।

ରେଲଗାଡ଼ି ଯେତେବେଳେ ଷ୍ଟେସନରେ ଆସି ପହଞ୍ଚିଲା, ସେତେବେଳକୁ ମୁହଁ ଅନ୍ଧାର । ଝଡ଼ବର୍ଷା ଲାଗି ରହିଥିବାରୁ ଅନ୍ଧାରଟା ବେଶି ନିଘୋଡ଼ ଜଣାପଡ଼ୁଥାଏ ।

ଷ୍ଟେସନଠାରୁ ଆମ ଗାଁ ପ୍ରାୟ ଦଶମାଇଲ ଦୂର । କେବଳ ଚାଲବାଟ ଦେଇ ତିନି ମାଇଲ ଯିବାକୁ ହେବ । ମଝିରେ ବି

Digitized by srujanika@gmail.com

ଗୋଟାଏ ବଡ଼ ବଣ ପଡ଼ିବ । ବିଲରେ ଧାନଗଛ ଗୁଡ଼ିଯାଏ ବଢ଼ିଥାଏ । ତଳେ ପାଣି କାଦୁଅ, ଉପରେ ବର୍ଷା । କୋହଲା ପବନ ଦେହକୁ ଥରାଇ ଦେଉଥାଏ ।

ଏପରି ଅବସ୍ଥାରେ ମୋର ବାଟ ଚାଲିବାକୁ ମନ ହେଲା ନାହିଁ । ସାଙ୍ଗରେ ମଧ୍ୟ ଦୁଇଟି ଭାରି ସୁଟ୍‌କେଶ ରହିଥାଏ । ଷ୍ଟେସନରେ ଗୋଟିଏ ହେଲେ କୁଲି ନ ଥାନ୍ତି । ମୁଁ ଭାବିଲି, ଭଲ ହୋଇ ଫର୍ଚ୍ଚା ହେଲେ ଷ୍ଟେସନକୁ କୁଲି ଆସିବେ, ଗୋଟିଏ କୁଲି ସାଙ୍ଗରେ ଧରି ମୁଁ ଗାଆଁକୁ ଯିବି ।

ସେହି ଗାଡ଼ିରେ ଆମ ଗାଆଁ ହରି ଅଜା ଆସିଥିଲେ । ସେ ବି ଗାଡ଼ିରୁ ଓହ୍ଲାଇଲେ । ତାଙ୍କ ସାଙ୍ଗରେ ଗୋଟିଏ ବଡ଼ ବସ୍ତାରେ ବନ୍ଧା କେତେକ ମାଲ ଥାଏ ।

ହରି ଅଜାଙ୍କର ଗୋଟିଏ ଚ୍ଛୋଟିଆ ଦୋକାନ ଗାଁରେ ଅଛି । କଣ୍ଟ୍ରୋଲ ଜିନଷ ବିକି ସେ ଆଜକାଲି ବେଶ୍ ଦୁଇ ପଇସା ପାଉଅଛନ୍ତି । ଗାଁରେ ଗୋଟିଏ ବିବାହ ଉତ୍ସବ । ସେମାନେ କହିଛନ୍ତି ଏ ବିବାହ ଉତ୍ସବ ପାଇଁ କୋଡ଼ିଏ ସେର ଚିନି ଦେଲେ, ପ୍ରକୃତ ଦାମ ଉପରେ ସେରକେ ଟଙ୍କାଏ ଲେଖାଏଁ ଅଧିକା ଦେବେ । ଏହି ଲୋଭରେ ଅଜା ସହରକୁ ଯାଇଥିଲେ । ବହୁ ଯୋଗାଡ଼ଯନ୍ତ୍ର କରି କୋଡ଼ିଏ ସେର ଚିନି ସଂଗ୍ରହ କରିଛନ୍ତି । ଠିକ୍ ସମୟରେ ତାହା ପହଞ୍ଚାଇ ଦେଲେ କୋଡ଼ିଏଟି ଟଙ୍କା ଥୁଆ । ମାତ୍ର ବେଳ ଗଡ଼ିଗଲେ ଲାଭତକ ତ ଯିବ; ଏତେ କଷ୍ଟରେ ସେ ଯେଉଁ ମାଲ ସଂଗ୍ରହ କରି ଆଣିଛନ୍ତି, ତାହା ଦୋକାନରେ ପଡ଼ି ରହିବ । ସେଥିପାଇଁ ସେ ଗାଁକୁ ଯିବାକୁ ତରତର; କିନ୍ତୁ ଏ ଅବସ୍ଥାରେ ଯିବାକୁ ମନ ଟେକୁ ନାହିଁ ।

ଷ୍ଟେସନରେ ମୋତେ ଦେଖି ସେ ଖୁସି ହୋଇଗଲେ ।

Digitized by srujanika@gmail.com

କହିଲେ, "ଆମେ ତ ଦୁଇ ଜଣ ହେଲେଣି; ଚାଲ, ଗୋଟିଏ ଗୋଟିଏ ଚାଲିପିବା।"

ପ୍ରଥମେ ମୋର ଇଚ୍ଛା ହେଉ ନ ଥିଲା; କିନ୍ତୁ ଅଜାଙ୍କ ଉତ୍ସାହ ପାଇ ଗୋଟିଏ ସୁଟ୍‌କେଶ୍ କାନ୍ଧରେ ଥୋଇଲି; ଆଉ ଗୋଟିଏ ହାତରେ ଧରି ଷ୍ଟେସନରୁ ବାହାରି ପଡ଼ିଲି।

ଅଜା ତିନି ବସ୍ତାଟି ମୁଣ୍ଡାଇ ଆଗେ ଆଗେ ଚାଲିଥାଆନ୍ତି। କିଛି ବାଟ ଚାଲିଲା ପରେ ମୋ ହାତ ଛିଡ଼ିପଡ଼ିଲା ପରି ଜଣାଗଲା; ଅଜାଙ୍କ ମୁଣ୍ଡକୁ ମଧ୍ୟ କାଟିଲାଣି।

ଧାନବିଲ ମଝିରେ ସରୁ ହିଡ଼। ପାଦତଳେ ପାଣି କାଦୁଅ। ଠାଏ ଗୋଡ଼ ପକାଇଲେ ତିନିଠା ଖସିଯାଉଛି। ଝିପିଝିପି ବର୍ଷା, କୋହଲା ପବନ, ପୁଣି ଓଦା ଧାନଗଛର ପତ୍ରସବୁ ଦେହରେ ବାଜି କଲିଜା ଥରାଇ ଦେଉଛି। ଭଲହୋଇ ବାଟଘାଟ ଦିଶୁ ନାହିଁ। ଆମେ ପାଦ ଚପିଚପି ଗୋଟିଏ ଗୋଟିଏ ଆଗକୁ ଚାଲୁଛୁ।

ଖଣ୍ଡେ ଦୂରରେ ଗୋଟାଏ ବଡ଼ କୁନ୍ଦ। ସେ କୁନ୍ଦ ଉପରେ ଗୋଟାଏ ଉଇହୁଙ୍କା ପାଖରେ ଜଣେ ମଣିଷ ବସିଥିଲା ପରି ଦେଖାଗଲା। ମୁଁ ଅଜାଙ୍କୁ ଦେଖାଇ ଦେଇ କହିଲି, "ଅଜା, ସେଠାରେ କିଏ ବସିଲା ପରି ଦିଶୁଛି। ତାକୁ ଡାକିବା କି?"

ଅଜାଙ୍କ ବୋଝ ବୋଧହୁଏ ଖୁବ୍ ଭାରି। ସେ ତ ମନେ ମନେ ଟୋକିଏ ଲୋକ ଖୋଜୁଥିଲେ—କିଏ ଆସି ତାଙ୍କ ବୋଝଟା ମୁଣ୍ଡାଇଲେ ଭଲ ହୁଅନ୍ତା। ଟଙ୍କାଏ ଯାଏ ମଜୁରି ନେବ, ନେଉ, କୋଡ଼ିଏ ଟଙ୍କାରୁ ଗୋଟିଏ ଟଙ୍କା ଗଲେ ବାକି ଯାହା ରହିବ, ତାହା କିଛି କମ୍ ନୁହେଁ।

ସେ ମୋ କଥାର ଉତ୍ତର ଦେଇ କହିଲେ, "ହଁ, ହଁ,

Digitized by srujanika@gmail.com

ଗଛ ପାଖଆସିଲା ନା, କେହି ବୋଧହୁଏ ଘରୁ ଉଠି ଆସି ସେଠାରେ ଝାଡ଼ା ଫେରି ବସିଛି । ତାକୁ ଡାକଲେ ଆମ ବୋଝତକ ନେଇ ଗାଁରେ ପହଞ୍ଚାଇ ଦିଅନ୍ତା ।"

ଆଗରୁ ଯାହା ଟିକଏ ପାଦ ପଡ଼ୁଥିଲା, 'ବୋଝ ଖଲାସ ହେବ'—ଏହା ଭାବିଲାକ୍ଷଣି ଗୋଡ଼ ଆଉ ଚଳିଲା ନାହିଁ ।

ଅଜା ବଡ଼ ପାଟିରେ ଡାକ ପକାଇଲେ, "ଆରେ କିଏ ଝାଡ଼ା ଫେରି ବସିଛ, ଶୀଘ୍ର ଆସ । ହରିପୁରକୁ ଗୋଟିଏ ବୋଝ ନେବ । ଭଲ ମଜୁରି ଦିଆଯିବ ।"

ଥରେ ଡାକଲେ, ଦୁଇ ଥର ବି ଡାକଲେ; କିନ୍ତୁ ତେଣୁ କିଛି ଉତ୍ତର ଆସିଲା ନାହିଁ ।

ଅଜା ପୁଣି ଡାକି କହିଲେ, "ଆରେ ଯଦି କଥା ନ କହିବ, ତେବେ ତାଳି ମାର ।" ତଥାପି କିଛି ସାଡ଼ାଶବ୍ଦ ନାହିଁ । ମୁଁ ଭାବିଲି, ଏଡ଼େ ପାଟି କଅଣ ଲୋକଟାକୁ ଶୁଭୁ ନାହିଁ ?

ଅଜା ବିରକ୍ତ ହୋଇ କହିଲେ, "ଆବେ, ତୁ କାଲ ନା କଅଣ ? ଏତେ ଡାକଲେ ବି ପଦେ ଜବାବ ଦେଉ ନାହୁଁ ?"

ଏହା କହି ଅଜା ବାଟ ଭାଙ୍ଗି ସେହି କୁଦ ଆଡ଼କୁ ଗଲେ । ମୁଁ ସେହିଠାରେ ସେ ଲୋକଟିକୁ ଚାହିଁ ଠିଆ ହୋଇଥାଏଁ ।

କୁଦ ଆଉ ପାଞ୍ଚ ସାତ ହାତ ଦୂର ଅଛି । ଅଜା ଗୋଟିଏ ଗୋଟିଏ ଯାଉ ଯାଉ ପାଟି କରି କହୁଥାଆନ୍ତି—"ତୁ ଗୋଟାଏ ଆପୁଡ଼ିଆ କାଲ କରେ ? ମୁଁ ଏତେ ଡାକୁଛି, ଶୁଣୁନାହୁ କି ପଦେ ହେଲେ ଜବାବ ଦେଉ ନାହୁଁ ? କଅଣ ମାଗଣା ଯିବୁ କି ? ହକ ମୂଲ ତ ନେବୁ ।"

ଅଜାଙ୍କ ପାଟିରୁ କଥା ସରି ନଥାଏ । ହୁଙ୍କାପାଖଟା ହଲିଗଲା ପରି ଜଣାଗଲା । ଭାଲୁଟା ଦେହକୁ ଝାଡ଼ିଝୁଡ଼ି ଦେଇ ଠିଆ

Digitized by srujanika@gmail.com

ହୋଇଗଲା । ବୋଧହୁଏ ଅଜାଙ୍କର ଏ ଗାଳଗୁଲଜ ଗୁଡ଼ାକରେ ସେ ଅପମାନ ବୋଧ କଲା । ନିଜକୁ ଆଉ ଥରେ ହଲାଇ ଦେଇ ଯେତେବେଳେ ଠିଆ ହୋଇଗଲା, ସେତେବେଳେ ଅଜାଙ୍କ ଆଖି ଖୋସି ହୋଇଗଲା । ସେ ଦେଖିଲେ, ଗୋଟାଏ ମସ୍ତବଡ଼ ଘଲୁ । ବୋଧହୁଏ ଉଇହୁଙ୍କା ଭିତରେ ମୁହଁ ପୂରାଇ ଥିଲା । ବାହାରେ ଶବ୍ଦ ଶୁଣି ରାଗିଯାଇଛି । ମୁହଁ ଟେକି ଯେମିତି ଅଜାଙ୍କୁ ଦେଖିଛି, ସେମିତି ନିଜ ରୂପ ଦେଖାଇ ଦେଲା ।

ସେ ଗୋଟାଏ କୁଦାରେ ଆସି ଅଜାଙ୍କ ପାଖରେ ହାଜର । ଅଜାଙ୍କୁ ଟିକିଏ ଆଲିଙ୍ଗନ କରିବାକୁ ବସିବାରୁ ଅଜା ପାଟି କରି ଉଠିଲେ, "ବାପ ଲୋ, ଘଲୁ ଖାଇଗଲା ।" ସାଙ୍ଗେ ସାଙ୍ଗେ ମୁଣ୍ଡ ଉପରୁ ଚିନି ବସ୍ତାକୁ ଘଲୁ ଉପରକୁ ପକାଇ ବିଲ ମଝିରେ ଦେ ଦଉଡ଼ ।

ଘଲୁ ମୁହଁ ଉପରେ ସେ ବସ୍ତାଟା ଖୁବ୍ ଜୋରରେ ପଡ଼ିଥିବ । ସେ ବୋଧହୁଏ ଦେଖିଲା, ଅବସ୍ଥା ସୁବିଧାର ନୁହେଁ । ଏଣେ ଫର୍ଚ୍ଚା ହୋଇ ଗୁରିଆଡ଼ ସଫା ଦେଖାଗଲାଣି । ବିଲ ମଝିରେ ଲୋକ ଯା ଆସ କଲେଣି । ଘଲୁ ଅଜା ସୁଆଗ ଗୁଡ଼ ବଣକୁ ଚାଲିଗଲା ।

ଅଜା ମଧ୍ୟ ବେଶି ବାଟ ଦଉଡ଼ିପାରିଲେ ନାହିଁ । ଧାନ ଗଛରେ ଛନ୍ଦି ହୋଇ ବିଲରେ ପଡ଼ିଗଲେ । ଗୋଟାସୁଦ୍ଧା କାଦୁଅରେ ଲଟପଟ ।

ମୁଁ ବଡ଼ ପାଟିକରି ଉଠିଲି । ଲୋକେ ଆସି ଜମା ହେଲେ । ଟେକାଟେକି କରି ଅଜାଙ୍କୁ ନେଇ ତାଙ୍କ ଘରେ ଥୁଇଲେ ।

Digitized by srujanika@gmail.com

ଅଜାଙ୍କର ଚେତା ହେବା ସାଙ୍ଗେ ସାଙ୍ଗେ ସେ ଆଗ କହିଲେ, "ମୋ ଟଙ୍କା ବସ୍ତା କାହିଁ ?"

ମାତ୍ର ସେତେବେଳକୁ ବସ୍ତାରୁ ଟଙ୍କାତକ ପାଣିରେ ଧୋଇ ହୋଇ ଯାଇଥିଲା । ଅଜାଙ୍କ କୋଡ଼ିଏ ଟଙ୍କାର ସ୍ୱପ୍ନ ଭାଲୁ ଯୋଗେ ଉଭେଇଗଲା ।

—୭—

ଆମେରିକା ଦେଶ କଥା । ଦଳେ ଶିକାରୀ ବଣକୁ ଶିକାର କରିବାକୁ ଯାଇଥିଲେ । ହରିଣ କି ସେହିପରି କୌଣସି ଜନ୍ତୁ ମାରିବା ତାଙ୍କର ଇଚ୍ଛା ଥିଲା । ବଣରେ ଦୁଇ ତିନି ଦିନ ରହିବାକୁ ପଡ଼ିବ; ତେଣୁ ସେମାନେ ତମ୍ବୁ, ଖାଇବା ଜିନିଷ, ଷ୍ଟୋଭ ଆଦି ମଧ୍ୟ ସାଙ୍ଗରେ ନେଇଥାଆନ୍ତି ।

ବଣଭିତରେ ଗୋଟିଏ ଉଚ୍ଚ ଜାଗା ଦେଖି ତମ୍ବୁ ପକାଇଲେ । ସେଠାରେ ଜିନିଷପତ୍ର ସବୁ ରଖି ଟିକିଏ ବିଶ୍ରାମ ନେଲେ । ତା ପରେ ଯେ ଯାହାର ବନ୍ଧୁକ ଧରି ବଣଭିତରକୁ ବାହାରି ଗଲେ ।

ପ୍ରଥମେ ସେମାନଙ୍କ ଦାବୁଡ଼ରେ ପଡ଼ିଲେ ଦଳେ ଭାଲୁ । ସେଥିରେ ବଡ଼, ସାନ, ଅତି ଛୁଆ—ଏମିତି ସବୁ ରକମର ଭାଲୁ ଥାଆନ୍ତି । ଗୋଟିଏ ବଡ଼ ଭାଲୁ ଠିକ୍ ମୁରବି ପରି ଗୁଲୁଗୁଲୁ କରୁଥାଏ । ଶିକାରୀମାନେ ଜାଣିଗଲେ ଯେ, ସେ ହେଉଛି ଦଳପତି ।

ଅବଶ୍ୟ ଭାଲୁ ମାରିବା ଶିକାରୀମାନଙ୍କର ଇଚ୍ଛା ନ ଥିଲା । ତଥାପି ଆଗରେ ଏତେଗୁଡ଼ାଏ ଜନ୍ତୁ ଦେଖି ସେମାନଙ୍କ ହାତ ଖଜବଜ ହେଲା । ଜଣେ ଶିକାରୀ ସାଙ୍ଗେ ସାଙ୍ଗେ ବନ୍ଧୁକ ଟିପି ଦେଲେ । ଭାଲୁଦଳ ଭିତରୁ ଗୋଟିଏ ତଳେ ପଡ଼ି ଛଟପଟ ହେବାକୁ ଲାଗିଲା ।

Digitized by srujanika@gmail.com

ଏହା ଦେଖି ସବୁ ଭାଲୁ ଭୀଷଣ ରାଗିଗଲେ । ସେମାନେ ଶିକାରୀମାନଙ୍କୁ ଚାରିଆଡ଼ୁ ଘେରି ଆସିଲେ । ଶିକାରୀ ମୋଟରେ ପାଞ୍ଚ ଜଣ ଥିଲେ । ସେମାନେ ଅନ୍ୟ ଉପାୟ ନ ଦେଖି ଗୋଟିଏ ଜାଗାରେ ଗୋଳେଇ ହୋଇ ଚାରିଆଡ଼କୁ ମୁହଁ କରି ଠିଆ ହୋଇଗଲେ; ଏକ ସମୟରେ ଠୋ ଠା ବନ୍ଧୁକ ଫୁଟାଇଲେ । ଗୁଡ଼ୁଁ ଗୁଡ଼ୁଁ ଚାରି ପାଞ୍ଚୋଟି ଭାଲୁ ସେଠାରେ ଢଳିପଡ଼ିଲେ । ଦଳର ଯେ ସର୍ଦ୍ଦାର, ସେ ତଳେ ପଡ଼ି ଏମିତି ବିକଳ ଚିତ୍କାର କଲା ଯେ, ଯେପରି କି କହିଦେଲା 'ପଳାଅ, ପଳାଅ, ଏମାନଙ୍କୁ ପାରିବ ନାହିଁ ।'

ମୁହୂର୍ତ୍ତକ ମଧ୍ୟରେ ଭାଲୁପାଳ ବଣଭିତରେ ଅଦୃଶ୍ୟ ହୋଇଗଲେ । କିନ୍ତୁ ସମସ୍ତ ଶିକାରୀମାନେ ସେଠାରେ ଚକ ଠିଆ ହୋଇ ରହିଲେ; ମାତ୍ର ଯେତେବେଳେ ଜାଣିଲେ ଯେ, ଆଜି ଭାଲୁ ଆସିବେ ନାହିଁ, ସେଇଠୁ ତମ୍ବୁକୁ ଫେରିଲେ । ତିନୋଟି ବଡ଼ ବଡ଼ ମଲା ଭାଲୁଙ୍କୁ ବାନ୍ଧି ଭାର କଲେ; କଷ୍ଟରେ ସେମାନଙ୍କୁ ବୁହାଇ ନେଇ ଆସିଲେ । ଏହି ଭାଲୁଙ୍କ ଚମ ଉଠାଇନେଲେ ବେଶ୍ କିଛି ଟଙ୍କା ହେବ । ମରି ପଡ଼ିଥିବା ସବୁ ଭାଲୁଙ୍କୁ ଆଣିବାକୁ ଇଚ୍ଛା ଥିଲା; ମାତ୍ର ସବୁଗୁଡ଼ାକ ମିଶି ଏତେ ଭାରି ହେବ ଯେ, ସେମାନଙ୍କୁ ତମ୍ବୁ ପାଖକୁ ଆଣିବା ଅସମ୍ଭବ ମନେ କଲେ ।

ମଲା ଭାଲୁ ତିନୋଟିକୁ ତମ୍ବୁ ବାହାରେ ପକାଇ ଭିତରେ ସମସ୍ତେ ରହିଲେ । ସେତେବେଳକୁ ରାତି ହୋଇଯାଇଥିଲା । ତମ୍ବୁ ଚାରିପାଖେ ଥୋଡ଼ାଏ ନିଆଁ ଜାଳି ସେମାନେ ଭିତରେ ଶୋଇଲେ ।

ରାତି ଅଧରେ ଗୋଳମାଳ ହେବାରୁ ସେମାନଙ୍କର ନିଦ

Digitized by srujanika@gmail.com

ଲୁଚିଗଲା । ହଠାତ୍ ଟର୍ଚ୍ଚ ଆଲୁଅ ମାରି ଦେଖିଲେ, ଭାଲୁ ପଲ ତାଙ୍କ ତମ୍ବୁକୁ ଛୁଣ୍ଡାଇ ଟିକ୍‌ଟିକ୍ କରି ଦେଇଅଛନ୍ତି । ସାଙ୍ଗ ଭିତରୁ ଦୁଇଜଣଙ୍କର ଦେଖା ନାହିଁ ।

ବନ୍ଧୁକରେ ଗୁଳି ଭରତି ହୋଇ ରହିଥିଲା । ତିନିହେଁ ଏକାବେଳକେ ବନ୍ଧୁକ ଫୁଟାଇଲେ । କିଛି ସମୟ ପରେ ଦେଖାଗଲା, ସେ ସ୍ଥାନ ଖାଲି । ଭାଲୁ ଗୁଡ଼ାକ କଏ କୁଆଡ଼େ ପଳାଇଗଲେଣି ।

ଏମାନେ ସାଙ୍ଗ ଦୁଇଟିଙ୍କୁ ଖୋଜିଲେ; କିନ୍ତୁ କୌଣସି ସନ୍ଧାନ ପାଇଲେ ନାହିଁ । ମଲା ଭାଲୁ ତିନୋଟିକୁ ଦେଖିବାକୁ ଗଲେ; ସେ ତିନୋଟି ମଧ୍ୟ ନାହାନ୍ତି ।

ସେ ରାତି ପାହିଲା । ଶିକାରୀ ତିନିଜଣ ପ୍ରଥମେ ତାଙ୍କ ସାଙ୍ଗଙ୍କୁ ଖୋଜିବାକୁ ବାହାରିଲେ । ଯାଉଯାଉ ଦେଖିଲେ, ଜଣକର ଛୁଣ୍ଡା ଜାମା ଗୋଟିଏ ସ୍ଥାନରେ ପଡ଼ିଛି । ସେହି ବାଟ ଧରି ସେମାନେ ଆଉ କିଛି ଦୂର ଗଲେ । ନିବିଡ଼ ବଣଭିତରେ ଦୁଇଟିଯାକ ବନ୍ଧୁ ମରି ପଡ଼ିଥିବାର ଦେଖିଲେ । ମାତ୍ର ମଲା ଭାଲୁ ତିନୋଟିର ଆଦୌ ପତ୍ତା ମିଳିଲା ନାହିଁ ।

ସେହି ଦିନ ଶିକାରୀ ତିନିଜଣ ସହରକୁ ଫେରିଆସିଲେ । ପରେ ଅବଶ୍ୟ ଏହାର ପ୍ରତିଶୋଧ ନେଇଥିଲେ । ବହୁତ ଲୋକ ଓ ବହୁ ବନ୍ଧୁକ ଧରି ପୁଣି ଥରେ ଭାଲୁମାନଙ୍କ ସହିତ ଯୁଦ୍ଧ କରିବାକୁ ସେମାନେ ଯାଇଥିଲେ । ଏଥରକ ବଣରୁ ବହୁତ ଗୁଡ଼ାଏ ଭାଲୁ ମାଇଲେ । ଆଗରୁ ଖୁବ୍ ସାବଧାନ ଥିବାରୁ ସେମାନଙ୍କର କିଛି କ୍ଷତି ହୋଇ ନ ଥିଲା ।

Digitized by srujanika@gmail.com



ଥରେ ଜଣେ ଜଙ୍ଗଲବିଭାଗର ହାକିମ ଜଙ୍ଗଲ ଭିତରକୁ ତଦନ୍ତ କରିବାକୁ ଯାଇଥିଲେ । ସାଙ୍ଗରେ ତାଙ୍କର ଜଣେ ବନ୍ଧୁ ଥାଆନ୍ତି ।

ହାକିମ ସେ ଅଞ୍ଚଳରେ ନୂଆ । ଜଙ୍ଗଲ ଭିତରେ ସରକାରଙ୍କର ଗୋଟିଏ ଡାକବଙ୍ଗଳା ଥାଏ । ହାକିମ ସେଇଠାରେ ରାତିରେ ରହିଲେ ।

ସେ ଡାକବଙ୍ଗଳାରେ ପାଞ୍ଚ ଜଣ ଚୌକିଦାର ଥାଆନ୍ତି । ଏତେଜଣ ଚୌକିଦାର ଥିବାର ଦେଖି ହାକିମ ତ ତାତିଉଠିଲେ । ସେ କହିଲେ, ଗୋଟିଏ ଡାକବଙ୍ଗଳାରେ ଜଣେ କିମ୍ବା ଦୁଇ ଜଣ ଚୌକିଦାର ରହିବାର କଥା । ସେଠାରେ ପାଞ୍ଚ ଜଣଙ୍କୁ ଦରମା ଦିଆଯାଉଛି କାହିଁକି ? ସରକାରଙ୍କ ଟଙ୍କା ବୃଥା ଅପବ୍ୟୟ ହେଉଛି ସିନା ! ମୁଁ ହେଡ୍‌ଅଫିସକୁ ଗଲେ ତିନି ଜଣଙ୍କ ଦରମା କାଟିଦେବି ।

ଚୌକିଦାରମାନେ ହାକିମ ଓ ତାଙ୍କ ବନ୍ଧୁଙ୍କର ସବୁ ପ୍ରକାର ସୁବିଧା କରିଦେଲେ । ରାତିରେ ଗୋଟିଏ ଘରେ ଦୁଇ ବନ୍ଧୁ ଶୋଇଲେ । ଜଣେ ଚୌକିଦାର ଆସି ଝରକା ଓ କବାଟ ସବୁ ବନ୍ଦ କରିଦେଇ ଗଲା । ହାକିମ ତା ଉପରେ ବିରକ୍ତ ହୋଇ କହିଲେ, "ଘର ଗରମ ହେଉଛି, ଝରକା କି କବାଟ କିଛି ବନ୍ଦ କର ନାହିଁ ।"

ଚୌକିଦାର ଡରି ଡରି କହିଲା, "ହଜୁର, ଏଠାରେ ଭାଲୁ ଉପଦ୍ରବ ବହୁତ ବେଶି । ଝରକା ଖୋଲା ରଖିଲେ, ରାତିରେ ଘର ଭିତରେ ଭାଲୁ ପଶିପାରେ । ତେଣୁ ଆଗରୁ ସାବଧାନ ହେବା ଦରକାର ।"

Digitized by srujanika@gmail.com

ହାକମ ହାକମି ମିଜାଜ ଦେଖାଇ କହିଲେ, "ହଉ, ଥାଉ, ଥାଉ । ତୁମ ଭାଲୁ ତୁମକୁ ବଡ଼ । ଆମ ପାଖରେ ବନ୍ଧୁକ ଅଛି, ଭାଲୁ ଆମର କିଛି କରିପାରିବ ନାହିଁ । ତୁମର ଯଦି ଏତେ ଡର, ତେବେ ତୁମେ ଯାଇ ତୁମ ଘରେ କବାଟ ଝରକା ବନ୍ଦ କରି ଶୁଅ, ଗରମରେ ସିଝ ।"

ଚୌକିଦାର ପାଞ୍ଚ ଜଣ ହାକମଙ୍କ କଥା ମୁତାବକ ଆଉ ଗୋଟିଏ ଘରେ ଯାଇ ଶୋଇଲେ । ହାକମ ଓ ତାଙ୍କ ବନ୍ଧୁ ଝରକା କବାଟ ଖୋଲା ରଖି ମଶାରି ଟାଣି ନିଜ ଘରେ ଶୋଇଲେ ।

ରାତି ଅଧ ବେଳକୁ ହାକମଙ୍କ ନିଦ ଭାଙ୍ଗିଗଲା । କଣ ଗୋଟିଏ ଶବ୍ଦ ଶୁଣି ସେ ବିଛଣାରୁ ଧଡ଼ପଡ଼ ହୋଇ ଉଠିଲେ । ଟର୍ଚ୍ଚ ମାରି ଦେଖିଲେ ଘର ଭିତରେ ଗୋଟାଏ ଭାଲୁ । ହଠାତ୍ ଆଲୁଅଟା ପଡ଼ିବାରୁ ଭାଲୁ ବୋଧହୁଏ ଚମକି ଉଠିଲା । ଟେବୁଲ ଉପରେ ଥୁଆ ହୋଇଥିବା ବିସ୍କୁଟ ଟିଣଟା ସେ ଆଗରୁ ହାତରେ ଧରିଥିଲା । ତାକୁ ସେହିପରି ଧରି ପଛ ଦୁଇ ଗୋଡ଼ରେ ଡେଇଁ ଡେଇଁ ଝରକା ଟପି ପଦାକୁ ପଳାଇଗଲା ।

ବନ୍ଧୁଙ୍କୁ ଉଠାଇବା ପାଇଁ ହାକମଙ୍କର ଆଉ ଖିଆଲ ନାହିଁ । ପଦାରେ ଜହ୍ନ ଆଲୁଅରେ ଋରିଆଡ଼ ଫର୍ଚ୍ଚା ଦିଶୁଛି । ହାକମ ମୁଣ୍ଡ ଉପରେ ଥୁଆ ହୋଇଥିବା ବନ୍ଧୁକଟି ଧରି ଝରକା ଡେଇଁ ଭାଲୁ ପଛରେ ଗୋଡ଼ାଇଲେ ।

କିଛି ବାଟ ଗଲା ପରେ ଭାଲୁର ଆଉ ଦେଖା ମିଳିଲା ନାହିଁ । ସେତିକିବେଳେ ଜହ୍ନ କଳାବଉଦ ଉହାଳରେ ଲୁଚିଯିବାରୁ ବଣ ଭିତରଟା ଅନ୍ଧାର ହୋଇଗଲା । ହାକମଙ୍କୁ

Digitized by srujanika@gmail.com

ଆଉ ବୁଦ୍ଧି କିଛି ଦେଖାଗଲା ନାହିଁ । ବିସ୍କୁଟ ଟିଣର ମାୟା ଛାଡ଼ି ସେ ଡାକବଙ୍ଗଳାକୁ ଫେରିବେ ବୋଲି ଠିକ୍ କଲେ ।

ପଛଆଡ଼ୁ ଖସ୍ ଖସ୍ ଶବ୍ଦ ଶୁଣାଗଲା । ସେ ବୁଲିଁ ଦେଖିଲେ, ଠିକ୍ ତାଙ୍କ ପାଖକୁ ଲାଗି ଗୋଟାଏ ବଡ଼ ଘଲ୍ । ହାକିମ ବନ୍ଧୁକଟି ଫୁଟାଇବା ପାଇଁ ଟେକି ଧଇଲେ । କିନ୍ତୁ ଘଲୁ ଆସି ତାଙ୍କୁ ଯୋରରେ ଏପରି ଏକ ଧକ୍କା ଦେଲା ଯେ, ବନ୍ଧୁକଟା ଛିଟିକି ଯାଇ ପାଞ୍ଚହାତ ଦୂରରେ ପଡ଼ିଲା; ହାକିମ ଟଳଟଳ ହୋଇ ପଡ଼ିଗଲେ ।

ତାଙ୍କର ଚେତା ଥାଏ; କିନ୍ତୁ କଅଣ କରିବେ କିଛି ଭାବିପାରୁ ନ ଥାନ୍ତି । ଏଇ ମୁହୂର୍ତ୍ତରେ ଯେ ଘଲୁ ହାତରେ ତାଙ୍କର ପ୍ରାଣ ଯିବ, ଏହା ସେ ସ୍ଥିର ଜାଣିଗଲେ । ପାଞ୍ଚୋଟି ଚଉକିଆଙ୍କ ଆଗରେ ଯେଉଁ ଅଖଣ୍ଡ ପ୍ରତାପ ଦେଖାଉଥିଲେ, ଗୋଟିଏ ଘଲୁ ଆଗରେ ସେସବୁ କୁଆଡ଼େ ଲୋପ ପାଇଗଲା ।

ଘଲୁ ତା ଆଗ ଦୁଇ ଗୋଡ଼ରେ ହାକିମଙ୍କ ଗୋଡ଼ ଦୁଇଟା ଧରି ଘୋଷାରି ଘୋଷାରି କେତେ ଦୂର ନେଇଗଲା । ହାକିମଙ୍କ ପିନ୍ଧା ଲୁଗା ଫଟି କେଉଁଠି ମଣ୍ଡ ରହିଲା, ଜାମା ଛିଡ଼ି ଟିକିଟିକି ହୋଇଗଲା । ପିଠି ଖଣ୍ଡିଆ ହୋଇ ଝରଝର ରକ୍ତ ବହିଲା । ଏହି ଅବସ୍ଥାରେ କିଛି ସମୟ ଘୋଷରି ହେବା ପରେ ସେ ଅଚେତ ହୋଇ ପଡ଼ିଲେ ।

ପରଦିନ ସକାଳୁ ଡାକବଙ୍ଗଳାରେ ଚହଳ ପଡ଼ିଗଲା, ହାକିମ ଗଲେ କୁଆଡ଼େ ? ଚୌକିଦାରମାନେ ଦେଖିଲେ, ଝରକା ତଳେ ଘଲୁ ପାଦ ପଡ଼ିଛି; ସ୍ଥାନେ ସ୍ଥାନେ ପାଦଚିହ୍ନ ବି ଦେଖାଯାଉଛି । ବନ୍ଧୁ ପାଖରେ ଥିବା ଗ୍ରାମରୁ ଆଉ କେତେ ଲୋକଙ୍କୁ ଡକାଇଲେ ।

Digitized by srujanika@gmail.com

ଚଉକିଦାର ପାଞ୍ଚଜଣଙ୍କ ସହ ପାଦଚିହ୍ନ ଉଣ୍ଡି ଉଣ୍ଡି ବଣ ଭିତରକୁ ଗଲେ ।

କେତେ ଦୂରରେ ଖାଲି ବନ୍ଦୁକ୍ ଟିଣଟି ପଡ଼ିଥିବାର ଦେଖାଗଲା । ତା ପରେ ଗୋଟିଏ ଜାଗାରେ ହାକିମଙ୍କ ବନ୍ଧୁକ ପଡ଼ିଥିଲା । ତା ପରେ ପିନ୍ଧାଲୁଗା, ଛିଣ୍ଡା ଜାମାର କେତେକ ଅଂଶ । ସବୁ ଦେଖି ଦେଖି ସେମାନେ ଆଗକୁ ଚାଲିଲେ ।

କିଛି ଦୂରରୁ ଦେଖିପାରିଲେ, ଗୋଟାଏ ଭାଲୁ ଗଛମୂଳେ ବସି ରହିଛି । ତା ପାଖରେ ହାକିମ ମଲା ପରି ପଡ଼ିଅଛନ୍ତି । ଗହଳଚହଳ ଶୁଣି ଏତେ ଲୋକଙ୍କୁ ଦେଖି ଭାଲୁ ଉଠି ଠିଆ-ହେଲା । ହାକିମଙ୍କୁ ଝୋଷାରି ନେବାକୁ ଚେଷ୍ଟା କଲା; ମାତ୍ର ଲୋକେ ଆସି ପାଖରେ ପହଞ୍ଚି ଯାଇଥିଲେ । ବନ୍ଧୁ ମଧ୍ୟ ଭାଲୁକୁ ଦେଖାଇ ଗୋଟାଏ ଗୁଳି ଫୁଟାଇଲେ । ଆଉ ସୁବିଧା ନୁହେ ଭାବି ଭାଲୁଟି ବଣ ଭିତରେ କୁଆଡ଼େ ଅଦୃଶ୍ୟ ହୋଇଗଲା ।

ଲୋକେ ଯାଇ ଦେଖିଲେ, ହାକିମ ଏକାବେଳକେ ଅଜ୍ଞାନ । ସେମାନେ ତାଙ୍କ ମୁହଁରେ ପାଣି ଛଟାଛଟି କଲେ । ବହୁତ ସେବା ଶୁଶ୍ରୂଷା ପରେ ହାକିମଙ୍କ ଚେତା ଆସିଲା । ସେ ଆଖି ଫିଟାଇ ଚାହିଁଲେ; କିନ୍ତୁ ଉଠି ବସିବାକୁ ସୁଦ୍ଧା ତାଙ୍କର ବଳ ପାଇଲା ନାହିଁ । ସେତେବେଳକୁ ଖବର ଆସି ମୁଣ୍ଡ ଉପରେ ।

ସମସ୍ତେ ମିଶି ତାଙ୍କୁ ଧରାଧରି କରି ଡାକବଙ୍ଗଳାକୁ ଆଣିଲେ । ସହରରୁ ଡାକ୍ତର ଡକାହୋଇ ଗଲେ । ବହୁ ଚିକିତ୍ସା ପରେ ତିନି ମାସରେ ହାକିମ ବିଛଣାରୁ ଉଠିଲେ ।

ଗୋଟିଏ ପୁରୁଣା ଚୌକିଦାର ଏହି ଭାଲୁ ଉପଦ୍ରବ ସମ୍ପର୍କରେ କହୁଥିଲା—ଆଗେ ଏଠାରେ ଏତେ ଭାଲୁ ଭୟ

Digitized by srujanika@gmail.com

ନ ଥିଲା । ଦୁଇବର୍ଷ ତଳେ ଜଣେ ହାକିମ ଆସିଥିଲେ । ସେ ବଣରେ ବୁଲି ବୁଲି ଦୁଇଟି ଭାଲୁ ଛୁଆ ପାଇଲେ । ସେମାନଙ୍କୁ ଆଣି ସେ ରାତିଟି ଏହି ଡାକବଙ୍ଗଳାରେ ରହିଲେ । ସେଦିନ ପ୍ରଥମ ହୋଇ ଏଠାକୁ ଭାଲୁ ଆସିଥିଲା । ପରଦିନ ତ ଛୁଆଙ୍କୁ ନେଇ ହାକିମ ଚାଲିଗଲେ; କିନ୍ତୁ ଏଠାରେ ଭାଲୁ ଉପଦ୍ରବ ବଢ଼ି ଚାଲିଲା । ବହୁ ହାକିମ ଖଣ୍ଡିଆଖାବରା ହେଲେ । ଗୋଟିଏ ଚୌକିଦାର ବି ମଲା । ଆଗେ ଏଠାରେ ଦୁଇଜଣ ଚୌକିଦାର ରହୁଥିଲେ, ଏହି ଭାଲୁ ଉପଦ୍ରବ ସକାଶେ ପାଞ୍ଚ ଜଣ ଚୌକିଦାର ରହିଲେ, ତଥାପି ଭାଲୁ ତା ଅଦଳତି ଛାଡ଼ୁ ନାହିଁ । ପ୍ରାୟ ପ୍ରତିଦିନ ରାତିରେ ଆସି ଏଠାରେ ବୁଲାବୁଲି କରୁଛି । ସୁବିଧା ପାଇଲେ ଲୋକଙ୍କୁ ଖଣ୍ଡିଆ ଖାବରା କରୁଛି ।

—୯—

ଜୁଣ୍ଡିଆର ଧଳା ଭାଲୁ ବଡ଼ ରାଗୀ ଓ ବଡ଼ ହିଂସ୍ରକ । ତଥାପି ସେମାନଙ୍କ ମନରେ ଦୟାମାୟା ଥାଏ । ତାଙ୍କର ଯେ ଉପକାର କରିଥାଏ, ତାହା ସେ ଭୁଲିପାରନ୍ତି ନାହିଁ ।

ଥରେ ଜଣେ ଡାକ୍ତର ନାଆରେ ବସି ଗୋଟିଏ ନଈକୂଳରେ ଯାଉଥିଲେ । ବହୁତ ବାଟ ଯିବାକୁ ହେବ । ତେଣୁ ସଙ୍ଗରେ ପାଞ୍ଚ ଜଣ ଚାକର ନେଇଥାଆନ୍ତି । ସାତ ଆଠ ଦିନ ପାଇଁ ଖାଦ୍ୟ ପଦାର୍ଥ ମଧ୍ୟ ପାଖରେ ଥାଏ ।

ନଈରେ ବହୁତ କୁମ୍ଭୀର । ସ୍ଥାନେ ସ୍ଥାନେ ଦଳ ଓ ଲଟା ମାଡ଼ି ଏପରି ହୋଇଥାଏ ଯେ, ସେଠାରେ ପାଣି ଆଦୌ ଦିଶୁ ନ ଥାଏ । ତା ଉପରେ ଜଣେ ଲୋକ ମଧ୍ୟ ଅକ୍ଳେଶରେ ଚାଲିଯାଇ ପାରିବ ।

Digitized by srujanika@gmail.com

ସନ୍ଧ୍ୟା ହେବାରୁ ଡାକ୍ତର ଗୋଟିଏ ସୁବିଧା ଜାଗା ଦେଖି ନାଆ ଅଟକାଇବାକୁ ହୁକୁମ ଦେଲେ । ନଈକୂଳରେ ବଣ; ଭାଲୁ ପ୍ରଭୃତି ରହୁଛନ୍ତି । ନଈର ପାଣିଭିତରେ କୁମ୍ଭୀର । ଏପରି ଅବସ୍ଥାରେ ରାତିରେ ନାଆ ଛାଡ଼ିବା ସୁବିଧାଜନକ ନୁହେ ।

ନାଆଭିତରେ ବସି ଡାକ୍ତର ଖାଉଛନ୍ତି, ବାହାରେ କଣ ବିକଳ ଶବ୍ଦ ଶୁଣାଗଲା । ସେ ପଦାକୁ ଆସି ଦେଖିଲେ, ଅଳ୍ପ ଦୂରରେ ଗୁଡ଼ାଏ ବଳ ଜମି ଶୁଖିଲା ଚଡ଼ା ପରି ହୋଇଛି । ତା ଉପରେ ଗୋଟିଏ ଭାଲୁ ଛୁଆ ପଡ଼ିଛି । ବୋଧହୁଏ ତାକୁ କଷ୍ଟ ହେଉଛି, ସେ ବିକଳରେ ଶବ୍ଦ କରୁଛି ।

ଡାକ୍ତର ନାଆଟିକୁ ତା ପାଖକୁ ନେଲେ । ଚଡ଼ାଉପରେ ଉଠି ଭାଲୁ ଛୁଆକୁ କୋଳରେ ଧରି ଆଣିଲେ । ପ୍ରଥମେ ସେ ଆସୁ ନ ଥିଲା । ଡାକ୍ତର ତାକୁ ଆଉଁସା ଆଉଁସି କରିବାରୁ ସେ ଆସିବାକୁ ରାଜି ହେଲା ।

ଡାକ୍ତର ଦେଖିଲେ, ତା ଦେହର କେତେ ଜାଗା ଖଣ୍ଡିଆ ହୋଇ ଯାଇଛି । ସେ ସେଥିରେ ଆସ୍ତେ ଔଷଧ ଲଗାଇ ଦେଲେ । ପାଟରେ ଯେଉଁ ଦୁଧ ଓ ରୋଟି ଥିଲା, ତାହା ଖାଇବାକୁ ଦେଲେ । ତା ମୁଣ୍ଡ ଓ ଦେହରେ ହାତ ବୁଲାଇଲେ ।

ଛୁଆଟି ନିର୍ଭୟରେ ତାଙ୍କ ପାଖରେ ଶୋଇପଡ଼ିଲା ।

ରାତି ପାହିଲା, ନିତ୍ୟକର୍ମ ସାରି ନାଆ ଫିଟାଇବାକୁ ଡାକ୍ତର ହୁକୁମ ଦେଲେ । ଏତିକିବେଳେ କୂଳରେ ଗୋଟାଏ ଭାଲୁ ଗର୍ଜନ ଶୁଣାଗଲା । ସେ ଶବ୍ଦ ଶୁଣି ନାଆ ଭିତରୁ ଛୁଆଟି ଉଠି ପଡ଼ିଲା; କେଁ କେଁ ହୋଇ ପଦାକୁ ଚାଲି ଆସିଲା । କୂଳକୁ ଡେଇଁ ପଡ଼ିବା ପାଇଁ ବଡ଼ ଉଚ୍ଛନ୍ନ ହେଲା ।

Digitized by srujanika@gmail.com

ଡାକ୍ତର କୂଳର ଅଳ୍ପ ଦୂରରେ ନାଆଟି ଅଟକାଇଲେ । କାଳେ ଘଲ୍ଲୁ ନାଆ ଉପରକୁ ଡେଇଁ ପଡ଼ିବ, ସେ ଭୟ ହେଉଥାଏ । ଖୁବ୍ ସାବଧାନରେ ରଜ୍ଜୁ ଆସ୍ତେ ଛୁଆଟିକୁ କୂଳକୁ ଛାଡ଼ିଦେଲେ । ତା ପରେ ଖୁବ୍ ଜୋରରେ ନଈ ମଝିକୁ ନାଆ ଭିଡ଼ିନେଲେ ।

ମାଆ ଘଲ୍ଲୁ ଛୁଆକୁ ପାଖରେ ଦେଖି କୁରୁଳି ଉଠିଲା । ଛୁଆଟି ମଧ୍ୟ ତା ପିଠିରେ ବସି, ତା ମୁହଁ ପାଖରେ ମୁହଁ ରଖି ଖୁବ୍ ଆନନ୍ଦ ଜଣାଇଲା । ଡାକ୍ତର ନାଆରେ ବସି ଏହି ଦୃଶ୍ୟ ଦେଖୁଥାଆନ୍ତି । ମା ପିଲାଙ୍କ ଖୁସି ଦେଖି ସେ ମଧ୍ୟ ମନେ ମନେ ଆନନ୍ଦ ଅନୁଭବ କଲେ ।

ତା ପରେ ଦେଖାଗଲା, ସେ ଘଲ୍ଲୁ ନାଆ ସାଙ୍ଗେ ସାଙ୍ଗେ କୂଳେ କୂଳେ ଗୁଳୁଛି । ଚାକରମାନେ କହିଲେ, ଏ ନିଶ୍ଚୟ ଆମ ଉପରେ ଚଢ଼ାଉ କରିବ, ସେଥିପାଇଁ ସୁଯୋଗ ଜଗି ଆମ ପିଛା ଧରିଛି । ଡାକ୍ତରଙ୍କର ମଧ୍ୟ ମନରେ ଟିକିଏ ଭୟ ହୋଇଗଲା । ଖୁବ୍ ସାବଧାନରେ ରହିବା ପାଇଁ ସେ ଚାକରମାନଙ୍କୁ ନିର୍ଦ୍ଦେଶ ଦେଲେ ।

ସେଦିନ ନାଆ ବେଶି ବାଟ ଯାଇପାରିଲା ନାହିଁ; ସନ୍ଧ୍ୟା ହେବାରୁ ଗୋଟିଏ ସ୍ଥାନରେ ଅଟକିଲା । ଡାକ୍ତର ଖିଆପିଆ ସାରି ଶୋଇଲେ ।

ରାତିରେ ହଠାତ୍ ଶବ୍ଦ ଶୁଣି ତାଙ୍କ ନିଦ ଭାଙ୍ଗିଗଲା । ସେ ଆଲୁଅ ଜାଳି ଦେଖିଲେ, ତାଙ୍କ ପାଦତଳେ ସେହି ଘଲ୍ଲୁ । ସେ ଘଡ଼ରିକି ଗଁ ଗଁ ହେଉଛି, ଉଠିପାରୁ ନାହିଁ ।

ଡାକ୍ତର ଭୟରେ ସାଙ୍ଗେ ସାଙ୍ଗେ ଛାତଉପରକୁ ଉଠିଲେ । ସେଠାରେ ଠିଆହୋଇ ଭଲରୂପେ ତଳକୁ ଚାହିଁଲେ । ଦେଖିଲେ, ଗୋଟାଏ ଖୁବ୍ ବଡ଼ ସାପ । ଘଲ୍ଲୁ

Digitized by srujanika@gmail.com

ତା ଫଣାକୁ ଆଗ ଦୁଇ ଗୋଡ଼ରେ ଏପରି ଚୁପି ଧରିଛି ଯେ, ସେ ମୁହଁ ଟେକିପାରୁ ନାହିଁ; ଏଣେ ସାପ ଭାଲୁ ଦେହସାକ ଗୁଡ଼ାଇ ହୋଇଯାଇ ତାକୁ କାବୁ କରି ପକାଇଛି ।

ଡାକ୍ତର ସାଙ୍ଗେ ସାଙ୍ଗେ ବୁଝିଗଲେ, ଏ ସାପଟି କପରି ନାଆଭିତରେ ପଶିଥିଲା । ତାଙ୍କ ଉପକାରୀ ବନ୍ଧୁ ଭାଲୁଟି ତାହା ଦେଖିପାରି ଆସି ତା ଉପରେ ଚଡ଼ାଉ କରିଛି । କେବଳ ଭାଲୁ ଯୋଗେ ହିଁ ସେ ସାକ୍ଷାତ ଯମ—ସାପ ମୁହଁରୁ ଆଜି ରକ୍ଷା ପାଇଅଛନ୍ତି ।

ସାପ ଓ ଭାଲୁ କିଛି ସମୟ ଧସ୍ତାଧସ୍ତି ହେଲେ; ଶେଷକୁ ଦୁହେଁଯାକ ମରିଗଲେ । ଡାକ୍ତର ମନେ ମନେ ଭାଲୁକୁ ଖୁବ୍ ଧନ୍ୟବାଦ ଦେଲେ । ସେ ନିଜ ଜୀବନ ଦେଇ ଡାକ୍ତରଙ୍କ ଜୀବନ ରଖିଛି—ଏଥିରେ କିଏ ବା କୃତଜ୍ଞ ନ ହେବ ?

ଆରଦିନ ସକାଳୁ ଦେଖାଗଲା, ସେ ଭାଲୁ ଛୁଆଟି କୂଳରେ ବୁଲୁଛି । ବଡ଼ ଆକୁଳଭାବରେ ନାଆକୁ ଚାହିଁ ରହିଛି; କେଁ କେଁ ହେଉଛି ।

ଡାକ୍ତରଙ୍କ କହିବାମତେ ନାଆ କୂଳକୁ ଲାଗିଲା । ସାଙ୍ଗେ ସାଙ୍ଗେ ଛୁଆଟି ନାଆକୁ ଡେଇଁପଡ଼ିଲା । ଡାକ୍ତରବାବୁ ଆନନ୍ଦରେ ତାକୁ କୋଳକୁ ଟେକିନେଲେ ।

ଭାଲୁଛୁଆଟି ଯେତେଦିନ ବଞ୍ଚିଥିଲା, ଡାକ୍ତରବାବୁ ସେତେଦିନ ତାକୁ ନିଜପୁଅଠାରୁ ବେଶି ଗେହ୍ଲା କରି ପାଳିଥିଲେ ।

———

ମୁଦ୍ରାକର—ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର, ପ୍ରସାଦ ପ୍ରେସ, କଟକ—୨

Digitized by srujanika@gmail.com

